# ଚରିତ୍ର ଚମତ୍କାର

[କ୍ଷୁଦ୍ର ଗଳ୍ପ ସଂକଳନ]

ଆନନ୍ଦଚନ୍ଦ୍ର ପାଣି

# ଚରିତ୍ରର ଚିତ୍କାର

**ଗାଳ୍ପିକ :**
ଆନନ୍ଦ ଚନ୍ଦ୍ର ପଣ୍ଡି
○
**ପ୍ରଥମ ପ୍ରକାଶ :**
୧୯୯୬
**ପ୍ରକାଶକ :**
ଅରୁନ୍ଧତୀ ପଣ୍ଡି
ଘରନଂ-ଇ-୧୭୯, ୟୁନିଟ୍-ଆଠ
ଭୁବନେଶ୍ୱର, ପିନ-୭୫୧୦୧୨
○
**ପ୍ରଚ୍ଛଦ :**
ଅଧ୍ୟାପକ ବଳଦେବ ମହାରଥୀ
○
**ଅକ୍ଷର :**
ଓଁକାର,
ଏମ୍-୫/୨, ଆଚାର୍ଯ୍ୟ ବିହାର, ଭୁବନେଶ୍ୱର
**ମୁଦ୍ରଣ :**
ଲେଜର ଆର୍ଟ୍,
ସହିଦ ନଗର, ଭୁବନେଶ୍ୱର
○
ମୂଲ୍ୟ :
ଅଠତିରିଶ ଟଙ୍କା ମାତ୍ର
○
ପ୍ରାପ୍ତିସ୍ଥାନ :

- ଗ୍ରନ୍ଥାଳୟ, ପୁଞ୍ଜାମାର୍କେଟ୍, ଭୁବନେଶ୍ୱର
- ଓଡ଼ିଶା ଲେଖକ ସମବାୟ ସମିତି, ଭୁବନେଶ୍ୱର
- କ୍ୟାପିଟାଲ ଷ୍ଟୁଡେଣ୍ଟସ୍ ଷ୍ଟୋର, ଅଶୋକ ନଗର, ଭୁବନେଶ୍ୱର
- ଅଗ୍ରଦୂତ, ବିନୋଦ ବିହାରୀ, କଟକ
- ଗୁରୁଜୀ ବୁକ୍‌ଷ୍ଟଲ୍, ଝାଞ୍ଜିରୀମଙ୍ଗଳା, କଟକ

# ସୂଚୀପତ୍ର

# କଥାକାରର କଥା

ଆମ ଚାରିକଡ଼ରେ ସାଧାରଣ ଓ ଅସାଧାରଣ ଅନେକ ଚରିତ୍ର। ସେମାନଙ୍କ ମଧ୍ୟରୁ ଅନେକଙ୍କର ଅନେକ ଯନ୍ତ୍ରଣା ଓ ଯନ୍ତ୍ରଣାଜନିତ ଅନେକ ଚିତ୍କାର। ସେମାନଙ୍କ ଚିତ୍କାର କାନଫଟା ନହୋଇପାରେ। ମର୍ମଭେଦୀ ନିଶ୍ଚୟ। ହୁଏତ ଆମେ କିଛି ଚିତ୍କାରକୁ କିଛି ଦିନ ପାଇଁ ଶୁଣି ନ ଶୁଣିବା ପରି ଏଡ଼େଇ ଯାଇ ପାରିବା; କିନ୍ତୁ ସବୁ ଚିତ୍କାରକୁ ସବୁଦିନ ପାଇଁ ଏଡ଼େଇ ଯିବା ସମ୍ଭବ ନୁହେଁ।

ଯେଉଁ କେତେକ ଚରିତ୍ରଙ୍କ ଚିତ୍କାରକୁ ଏଡ଼ାଇ ଯିବାକୁ ମୁଁ ସମର୍ଥ ହୋଇନାହିଁ ସେଇମାନଙ୍କ କଥା ଲେଖିଛି। ସେମାନଙ୍କ ଚିତ୍କାର ଆପଣମାନଙ୍କ ପାଖରେ ପହଞ୍ଚାଇବାର ଉଦ୍ୟମ କରିଛି।

ଏଥିରେ ସଂକଳିତ ସବୁ ଗଳ୍ପ ଓଡିଶାର ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକାମାନଙ୍କରେ ପ୍ରକାଶ ପାଇଛି ଓ ବହୁ ପାଠକଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଛି।

ଗଳ୍ପ ସଂକଳନଟି ପାଠକମାନଙ୍କ ଦ୍ୱାରା ଆଦୃତ ହେଲେ ମୋର ଶ୍ରମ ସାର୍ଥକ ହେବ।

ଯେଉଁମାନଙ୍କ ସାହାଯ୍ୟ, ସହଯୋଗ ଓ ଶୁଭେଚ୍ଛା ଯୋଗୁ ଏ ଗଳ୍ପ ସଂକଳନଟିର ପ୍ରକାଶନ ସମ୍ଭବ ହୋଇପାରିଲା, ମୁଁ ସେମାନଙ୍କ ପାଖରେ କୃତଜ୍ଞ।

ନିହଲ ପ୍ରସାଦ — ଆନନ୍ଦ ଚନ୍ଦ୍ର ପହି
ନଭେମ୍ବର, ୧୯୯୬

# ଯନ୍ତ୍ରଣା

ହଠାତ୍ ମୁଁ ଚିତ୍କାର କଲି । ମୋ ସ୍ତ୍ରୀ ବନାନୀ, ପୁଅ ବିସ୍ମୟ ଓ ଝିଅ ବର୍ଷା କାଉଳବାଉଳ ହୋଇ ନିଦରୁ ଉଠିଲେ । ବନାନୀ ଆଲୁଅ ଲଗାଇଲେ । ମୁଁ ଭୟରେ ଥର ଥର ହୋଇ ଥରୁଥିଲି । କାନ୍ଥ ଘଣ୍ଟାରେ ରାତି ଦୁଇଟା ।

ମୋ ଡାହାଣ ହାତ ମଝି ଆଙ୍ଗୁଠିରେ ଭେଦି ଯାଇଛି ଦୁଇଟା ଦାନ୍ତ । ଝରୁଛି ଦୁଇ ଧାର ରକ୍ତ । ମୋ ମନ ଓ ଦେହ ଦୋହଲି ଯାଉଛି । ମତେ ସାପ କାମୁଡ଼ିଛି । ଆଉ ମାତ୍ର କେଇ ଘଣ୍ଟା ପରେ ମୋ ମୃତ୍ୟୁ ।

ମୁଁ ବାଘ, ସିଂହ କି ବନ୍ଧୁକଧାରୀ ସନ୍ତ୍ରାସବାଦୀଙ୍କୁ ଯେତିକି ଭୟ ନ କରେ ତାଠୁ ବେଶୀ ଭୟ କରେ ଯେ କୌଣସି ସାପକୁ । ମତେ ଲାଗେ ସାପ ଯମରାଜାଙ୍କର ଯମ-ଦଉଡ଼ି । ବିଶେଷ କରି ଗାଁଗହଳିରେ ଚିକିତ୍ସାର ଆଦୌ ସୁବିଧା ନାହିଁ । ସାପ କାମୁଡ଼ା ପାଇଁ ଯେଉଁ ବିଶେଷ ଧରଣର ଇଞ୍ଜେକସନ୍ ଦରକାର ତାହା ଅନେକ ସମୟରେ ସହରରେ ମଧ୍ୟ ମିଳେ ନାହିଁ । ଆମ ଗାଁରେ ସେ ଔଷଧ କି ଇଞ୍ଜେକ୍ସନ ମିଳିବା ମୋଟେ ସମ୍ଭବ ନୁହଁ ।

ବନାନୀ ବଡ଼ ପାଟିରେ ଚିତ୍କାର କଲେ । ମୋ ପୁଅ ଝିଅ କାନ୍ଦି ଉଠିଲେ । ମୋ ସ୍ତ୍ରୀ, ପୁତ୍ର, କନ୍ୟା ଏମିତି କାନ୍ଦିବାରେ ପରିବେଶଟା କାନ୍ଦ କାନ୍ଦ ଦିଶିଲା । ମୋ ଦମ୍ଭ ଶୂନ୍ୟ ଡିଗ୍ରୀକୁ ଖସି ଆସିଲା । ମୁଁ ପିଲାଙ୍କ ପରି ଚିତ୍କାର କରି କାନ୍ଦି ଉଠିଲି ।

ଆମ ସାହି ଲୋକମାନେ ନିଦରୁ ଉଠି ମୋତେ ଘେରି ଗଲେ । ମୁଁ ସମସ୍ତଙ୍କୁ ଦେଖୁଛି କିନ୍ତୁ କାହାରିକୁ ଚିହ୍ନିପାରୁ ନାହିଁ । ମୋ ଆଖି, ସ୍ମୃତି, ସଂଜ୍ଞା ସବୁ ସଚଳ, କାର୍ଯ୍ୟକ୍ଷମ ଥାଇ ବି ସବୁ ଭିତରେ ଥିବା ସମନ୍ୱୟ ଆସୁ ନାହିଁ ।

କେହି ଜଣେ ସାତ/ଆଠ ଢାଳ ପାଣି ମୋ ମୁଣ୍ଡରେ ଢାଳିଲେ । ମୁଣ୍ଡ ଥାପୁଡାଇଲେ । ଆଙ୍ଗୁଳିର ବିଷାକ୍ତ ରକ୍ତ ଦେହକୁ କି ମୁଣ୍ଡକୁ ଯେପରି ଚହଟି ନ

ଆନନ୍ଦ ଚନ୍ଦ୍ର ପହି

ଯାଏ ତାର ପ୍ରତିକାର ପାଇଁ ହାତର କଟଟି ପାଖରେ ଜୋର୍ କରି ସୂତୁଲି ବାନ୍ଧିଲେ।

ସେଇ ରାତି ରାତି ଜଣେ କିଏ ମଟର ସାଇକେଲ ନେଇ ପାଖ ଗାଆଁର ନକଡି ଗୁଣିଆ ପାଖକୁ ଗଲେ। ଗୁଣି ଗାରେଡ଼ିରେ ମୋର ବିଶ୍ୱାସ ନ ଥିଲେ ବି ଆଉ କିଛି ଉପାୟ ନଥିଲା।

ସାପ କାମୁଡ଼ାରେ ଆଗରୁ ମୃତ୍ୟୁ ବରଣ କରିଥିବା ଆମ ଗାଆଁର ମଦନ ସାମଲ, ଝୁଲିଆ ମାଆ, ଟୁବୁ ଗଜଡ଼ଙ୍କର ସେ ଭୟଙ୍କର ଚେହେରା ମୋ ଆଖି ଆଗକୁ ବାରମ୍ବାର ଆସି ମୋତେ ଭୟଭୀତ କରାଉ ଥିଲା।

ବନାନୀ ତାଙ୍କ ଶାଢି କାନିରେ ମୋ ପାଟିକୁ ବାରମ୍ବାର ପୋଛି ମୋ ପାଟିରୁ ଗରଳ ବାହାରୁଛି କି ନାହିଁ ପରୀକ୍ଷା କରୁଥିଲେ। ନିଦ ଲାଗୁଛି କି ନାହିଁ ବାରମ୍ବାର ପଚାରୁଥିଲେ।

ସତ୍ୟବାନଙ୍କ ପରି ବନାନୀଙ୍କ କୋଳରେ ମୁଣ୍ଡ ରଖି ମୁଁ ଶୋଇଛି। ମୃତ୍ୟୁର ପାଦଶବ୍ଦକୁ ଅପେକ୍ଷା କରିଛି। ଦୁଃଖ, ଭୟ ଓ ହତାଶାର ଘନବାଦଲ ମୋ ଦେହ, ମନ, ଚିନ୍ତା ଓ ଚେତନାକୁ କାବୁ କରିଦେଇଥିଲା, ମୋ ଆଖି ଆଗରେ କେବଳ ମୃତ୍ୟୁ। ବିଶାଳ, ବିକଟାଳ ମୃତ୍ୟୁ।

ମୁଁ ଜୀବନକୁ ଯେତିକି ନିବିଡ଼ ଭାବେ ଭଲ ପାଏ, ମୃତ୍ୟୁକୁ ସେତିକି ଗଭୀର ଭାବେ ଭୟକରେ। କାହାରି ମୃତ୍ୟୁ ଦେଖିବା ପରି ଦାମ୍ଭିକତା ମୋ ମନର ନାହିଁ। କାହାରି ଶବ ଦାହ କରିବା ପରି ନୃଶଂସତା ମୁଁ ହାସଲ କରିପାରି ନାହିଁ।

ଅନ୍ୟ କାହାରି ମୃତ୍ୟୁ ଦେଖିବା ପରି ସାହସିକତା ହାସଲ କରି ନ ପାରିଥିବା ମୁଁ ମୋ ନିଜ ଆଖିରେ ମୋ ନିଜ ମୃତ୍ୟୁ ଦେଖିବାକୁ ଅପେକ୍ଷାକରି ଶୋଇଛି। ମୋ ଆଖିଭର୍ତ୍ତି ଲୁହ। ଛାତି ଭର୍ତ୍ତିକୋହ। ମନ, ପ୍ରାଣଭର୍ତ୍ତି ଭୟ।

କିଛି ସମୟ ପରେ ନକଡ଼ି ଗୁଣିଆ ପହଞ୍ଚିଲା। ସାପ କାମୁଡ଼ିଥିବା ସ୍ଥାନଟାକୁ ଏପଟ ସେପଟ କରି ଦେଖିଲା। ମୋତେ ସିଧା ବସାଇଲା। ମୋତେ ପ୍ରଶ୍ନ କଲା — ସାପଟାକୁ ତମେ ଦେଖିଛ ? ସେଟା କି ସାପ ? ଦେଖିବାକୁ କେମିତିଆ ?

ମୁଁ ଭୟମିଶା, ଭଙ୍ଗା ଭଙ୍ଗା କଣ୍ଠରେ ଉତ୍ତର ଦେଲି — ସାପଟାକୁ ମୁଁ ଦେଖି ନାହିଁ। ଅନ୍ଧାର ଭିତରେ ସାପଟାକୁ ଦେଖିବା ସମ୍ଭବ ନଥିଲା। ମୁଁ ଖଟ ଉପରେ ଶୋଇଥିଲି। ହାତଟା ତଳକୁ ଓହଳି ଥିଲା। ମୋ ଆଙ୍ଗୁଳିକୁ ହଠାତ୍ କ'ଣ ଗୋଟେ କାମୁଡ଼ି ଦେଲା। ଆଙ୍ଗୁଳି ଅଗରେ ଦୁଇଟା ଦାନ୍ତ ଚିହ୍ନ।

ମୋ ହାତ ଆଙ୍ଗୁଳିର କାମୁଡ଼ା ଚିହ୍ନକୁ ନକଡ଼ି ଭଲ ଭାବରେ ନିରୀକ୍ଷଣ କଲା। ପ୍ରଥମେ କିଛି ଲୁଣ, ପରେ କିଛି ଚିନି ମୋତେ ଚାଖିବାକୁ ଦେଲା। ଲୁଣ ଓ ଚିନିର ସ୍ୱାଦ ମୁଁ ବାରି ପାରିଲି।

ଆନନ୍ଦ ଚନ୍ଦ୍ର ପତି

ନକଡ଼ି ସାମାନ୍ୟ ଝଡ଼ାଫୁଙ୍କା କରି ମୋତେ କାଟ ପାଣି ପିଇବାକୁ ଦେବା ପରେ ମୁଁ ବିପଦମୁକ୍ତ ବୋଲି ଘୋଷଣା କଲା।

ନକଡ଼ି ପ୍ରକାଶ କଲା— ତୁମକୁ ସାପ ନୁହଁ, ମୂଷା କାମୁଡ଼ିଛି। ତୁମ ଆଙ୍ଗୁଠିରେ ଥିବା ଚିହ୍ନ ସାପ ଦାନ୍ତର ଚିହ୍ନ ନୁହଁ। ମୂଷାର ମୁନିଆଁ ଦାନ୍ତର ଚିହ୍ନ।

ମୋତେ ସାପ କାମୁଡ଼ି ନାହିଁ ବୋଲି ମୁଁ ଜାଣିବା ପରେ ସ୍ୱଭାବିକ ହୋଇଗଲି। ମୋ ଦେହର ଲୁଗାପଟାକୁ ମୁଁ ସଜାଡ଼ି ନେଲି। ଗାଆଁର, ସାହିର ଲୋକମାନେ ନିଜ ବାଟରେ ଫେରିଗଲେ। ସକାଳ ହେଲା। ମୁଁ ସଂପୂର୍ଣ୍ଣ ସୁସ୍ଥ ଅନୁଭବ କଲି।

ମୁଁ ମୂଷା କଥା ଭାବିଲି। ମୋତେ କାମୁଡ଼ି ଥିବା ମୂଷା କଥା। ମୂଷା ଆମ ଘରେ ବର୍ଷେ ଦୁଇ ବର୍ଷ ହେଲା ଉତ୍ପାତ କରୁଛି। ଆଗରୁ ମୋ ସ୍ତ୍ରୀ ଅଭିଯୋଗ କରିଛନ୍ତି—ମୂଷା ଆମ ପରିବା ଡ଼ାଲାରୁ ପରିବା ଖାଇ ଯାଉଛି, ଦୁଧ ଡ଼େକଚିର ଘୋଡ଼ଣୀ ପିଙ୍ଗିଦେଇ ଦୁଧ ପିଇ ଯାଉଛି, ପାଚିଲା ଆମ୍ବ, କଦଳୀ ଖଣ୍ଡିଆ କରି ଦେଉଛି।

ମୋ ଝିଅ ବର୍ଷା ଅଭିଯୋଗ କରିଥିଲା—ମୋ ପଲିଷ୍ଟର ଜାମାଟାକୁ ପିଠିପଟରୁ ମୂଷା କାଟି ଦେଇଛି। ମୋ ପାନିଆଟା କୁଆଡ଼େ ଟେକି ନେଇଛି। ଦେହଲଗା ସାବୁନ୍ କାଟି ଖଣ୍ଡ ଖଣ୍ଡ କରି ଦେଇଛି।

ପୁଅ ବିସ୍ମୟ ଅଭିଯୋଗ କରିଥିଲା- ମୋ ବିଜ୍ଞାନ ବହିଟାକୁ ଦଶ ପୃଷ୍ଠା ମୂଷା କାଟି ଦେଇଛି, ମୋ କ୍ରିକେଟ୍ ବ୍ୟାଟ୍‌ଟାକୁ ଅଧଗରିଆ କରି ଦେଇଛି।

ପୂର୍ବରୁ ଏ ସମସ୍ତ ଅଭିଯୋଗ ଶୁଣି ନ ଶୁଣିବା ପରି ଚୁପ୍ ରହିଥିଲି। କିନ୍ତୁ କାଲି ରାତିର ଘଟଣା ପରେ ମୋ ମନରେ ମୂଷା ପ୍ରତି ବିଦ୍ରୋହ ଜନ୍ମିଲା। ମୂଷାକୁ ମାରିବା ପାଇଁ ମୁଁ ନିଷ୍ପତ୍ତି ନେଲି। କିନ୍ତୁ କି ଉପାୟରେ ମୂଷାଟାକୁ ମାରିବାକୁ ହେବ ସେ ବିଷୟରେ ଆମ ଘରେ ବିତର୍କ ଚାଲିଲା।

ମୋ ସ୍ତ୍ରୀ ବନାନୀ କହିଲା— ହାଟରୁ ମୂଷାମରା ଔଷଧ ଆଣି ଅଟାଗୁଳା କରି ଦେଇ ଦେବା। ଏକାଥରେ ସବୁଯାକ ମୂଷା ନିପାତ ହୋଇଯିବେ।

କିନ୍ତୁ ମୁଁ ଯୁକ୍ତି କଲି—ବିଷ ଦେଇ ମାରିବା ଅତି ନୃଶଂସତା ହେବ। ଆମ ଗାଆଁର ଚଇଁଆ କଥା ମନେ ପଡ଼ିଲା। ଚଇଁଆ ମେଟ୍ରିକ ପରୀକ୍ଷାରେ ଫେଲ୍ ହେବାପରେ ବିଷ ଖାଇ ଦେଇଥିଲା। ଚଇଁଆ ଗର୍ଜନ କରି ଘର ସାରା ଗଡ଼ିଲା। ତା ଆଖି ଦୁଇଟା ବଡ଼ ବଡ଼ ହୋଇ ବାହାରକୁ ବାହାରି ଆସିଥିଲା। ତା ପେଟ ଭିତର ଅନ୍ତନାଡ଼ ଛିନ୍ ଭିନ୍ ହୋଇ ଚିରି ହୋଇ ଯାଇଥିଲା। ଛାତି ଓ ପେଟରେ ରଡ଼ ନିଆଁ କୁଢ଼େଇବା ପରି ଜଳି ଯାଇଥିଲା। ସେ ଦୃଶ୍ୟ ଏବେ ମଧ୍ୟ ମୋ ମନରୁ ଲିଭି ନାହିଁ।

ଆନନ୍ଦ ଚନ୍ଦ୍ର ପତି

ଶେଷରେ ସ୍ଥିର କଲି ମୂଷାମରା ଯନ୍ତାଟିଏ କିଣା ହୋଇ ଆସିବ। ସେ ଯନ୍ତାର ଦାନ୍ତ ଥିବ। ଯନ୍ତାର ଦାନ୍ତ ଭିତରେ ଶୁଖୁଆ ଖଣ୍ଡେ ବାନ୍ଧି ଦିଆଯିବ। ଶୁଖୁଆ ଖାଇବା ବେଳେ ମୂଷାର ବେକକୁ ଯନ୍ତାର ଦାନ୍ତ ଚାପି ଧରିବ। ମୂଷାର ଦେହ ଭିତର ବାହାର ହେଉଥିବା ପବନଟା ଯନ୍ତା ଦାନ୍ତର ଦୃଢ଼ଚାପରେ ଅଟକି ଯିବ। ବେଶୀ କିଛି ଯନ୍ତ୍ରଣା ହେବ ନାହିଁ ମୂଷାକୁ। ଜୀବ ବଧ କରିବାର ମନସ୍ତାପ ମୋତେ ହେବ ନାହିଁ।

ମୁଁ ଭାବିଲି ଏଇଥି ପାଇଁ ବୋଧହୁଏ ଆମ ଦଣ୍ଡବିଧି ଆଇନରେ ଅପରାଧୀକୁ ବିଷ ଖୁଆଇ ମାରିବାର ବ୍ୟବସ୍ଥା ରଖା ନ ଯାଇ ଅପରାଧୀକୁ ଫାଶି ଦେବାର ବ୍ୟବସ୍ଥା ରଖାଯାଇଛି।

ମନକୁ ଥାପୁଡ଼ାଇଲି, ନା ଏମିତି ଅନିଷ୍ଟ କରୁଥିବା ଜୀବକୁ ମାରିବାରେ ମୋର ଦୋଷ ରହିବ ନାହିଁ। ମାରିବାକୁ ମୂଷାମାନେ ମୋତେ ବାଧ୍ୟ କରୁଛନ୍ତି।

ସଂଧ୍ୟାବେଳେ ଯନ୍ତାଟିଏ ହାଟରୁ କିଣି ଘରକୁ ଫେରିଲି। ଖିଆପିଆ ପରେ ମୁଁ ନିଜେ ଯନ୍ତାରେ ଶୁଖୁଆଟିଏ ବାନ୍ଧିଲି। ସମସ୍ତେ ବିଛଣା ଧରିବା ପରେ ଯନ୍ତାଟି ରୋଷେଇ ଘର ସାମ୍ନାରେ ବସାଇ ଦେଇ ଶୋଇଲି।

ମୋ ଆଖିକୁ ମୋଟେ ନିଦ ନାହିଁ। ମୂଷାମାନଙ୍କ କଥା ମୁଁ ଭାବୁଥିଲି। ମୂଷାମାନଙ୍କର ନିଜର ଘର ନାହିଁ। ସେମାନେ ଆମ ଘରେ ଆମ ସହିତ ବାସ କରନ୍ତି। କିନ୍ତୁ ଏମିତି ଅନିଷ୍ଟ, ଉପଦ୍ରବ, ଉତ୍ପାତ କଲେ କିଏ ବରଦାସ୍ତ କରିବ ?

ଲାଇଟ୍ ଲିଭାଇବା ପୂର୍ବରୁ ଦେଖିଲି ମୋ ସ୍ତ୍ରୀ, ପୁଅ, ଝିଅ ସମସ୍ତେ ନିଦରେ ଶୋଇ ଗଲେଣି। ମୁଁ ଶୋଇବାକୁ ଚେଷ୍ଟା କଲି; କିନ୍ତୁ ପାରିଲି ନାହିଁ। ବିଛଣାରେ ଏପଟ ସେପଟ ଗଡ଼େଇଗଡ଼େଇ ହେଲି। ଆଖିକୁ ନିଦ ନାହିଁ। ମନଟା ମୋର ଡ଼ରି ଯାଇଥିବା ପରି ଥରି ଉଠୁଥିଲା। କୌଣସି ପଡ଼ୋଶୀକୁ ହତ୍ୟା କରିବାର ଷଡ଼ଯନ୍ତ୍ର କରିବା ପାପବୋଧ ଆଉ ଭୟ ମୋ ଦେହ, ମୁଣ୍ଡରେ ଗୁଡ଼େଇ ହୋଇ ଯାଉଥିଲା।

ଅନେକ ସମୟ ଏମିତି ଛଟପଟ ହେବା ପରେ ମୋ ଆଖି ବନ୍ଦ ହୋଇଯିବା କଥା ମୁଁ ଜାଣିଲି ଯେତେବେଳେ ଯନ୍ତାଟା ଖଡ଼୍ କରି ଶବ୍ଦ କଲା। ମୁଁ ଚମକି ଉଠିଲି। ମୋର ମନେ ହେଲା ସତେ ଯେମିତି ମୁଁ ନିୟୋଜନ କରିଥିବା ଗୁଣ୍ଡାମାନେ ମୋ ପଡ଼ୋଶୀକୁ ଏଇମାତ୍ର ହତ୍ୟା କରିବାର ଖବର ମୁଁ ପାଇଲି।

ଯନ୍ତାଟି ପୁଣି ଖଡ଼୍ ଖଡ଼୍ ହେଲା। ଏଥର ମୋ ପୁଅ ବିସ୍ମୟକୁ ଉଠାଇଲି। ସିଏ ଆଖି ମଳି, ମଳି ନିଦରୁ ଉଠିଲା। ବିସ୍ମୟର ବୟସ ମୋଟେ ଦଶ ବର୍ଷ। ଯନ୍ତାରେ ମୂଷା ପଡ଼ିଥିବା କଥା ତାକୁ କହିଲି। ତା ମୁହଁଟା ଶିକାର ନିଶାରେ

ଉଜ୍ଜଳ ଦିଶିଲା। ନିଦ ଚକମକ ଆଖି ଫାଙ୍କରେ ବିସ୍ମୟ ହସିଉଠି ପଚାରିଲା-କାହିଁ, କୋଉଠି ?

କବାଟ ଫିଟାଇ ମୁଁ ଆଗେଇଲି। ମୋ ପଛରେ ବିସ୍ମୟ, ତା ପଛରେ ବର୍ଷା, ଆଉ ସବା ପଛରେ ସେମାନଙ୍କର ମାଆ ବନାନୀ। ଭୟରେ ଆମେ ପଛକୁ ପଛ ରେଳଗାଡ଼ିର ଡ଼ବାପରି ଧାଡି ବାନ୍ଧି ଦେଇଥିଲୁ।

ବାଟ ଘର ଆଲୁଅଟା ଜଳାଇଲି। ଆମର ଆଠଟି ଆଖି ଯନ୍ତା ଉପରେ ଠୁଳ ହୋଇଗଲା। ମୂଷାଟି ଯନ୍ତାରେ ପଡ଼ିଛି। ତାର ଅଣ୍ଟାକୁ ଯନ୍ତାର ଦାନ୍ତ ଚାପି ଧରିଛି। ମୂଷା ଛାଟିପିଟି ହେଉଛି। ଯନ୍ତା ଧଡ଼ ଧଡ଼ ଖଡ଼ ଖଡ଼ ହେଉଛି।

ଆମକୁ ଦେଖି ମୂଷା ଅଧିକ ଛାଟି ପିଟି ହେଲା। ବନାନୀ ବଡ଼ ପାଟିରେ ଚିତ୍କାର କଲେ,—ଚାହିଁଛ କ'ଣ ? ବାଡ଼ିଟେ ଆଣି ମୂଷାଟାକୁ ପିଟି ଦିଅ। ପୁଣି ଥରେ ଯନ୍ତା ବସାଇଦିଅ, ଶୋଇବା।

ମୁଁ ଅନେଇଲି ବିସ୍ମୟ ମୁହଁକୁ। ବିସ୍ମୟ ଠେଙ୍ଗାଟେ ଆଣି ମୋ ହାତକୁ ବଢ଼ାଇ ଦେଲା। କିନ୍ତୁ ମୋ ହାତ ଚଳିଲା ନାହିଁ। ଗୋଟିଏ ଜୀବର ଅଣ୍ଟାରୁ ଯନ୍ତାର ଦାନ୍ତ ଚାପି ଧରିଛି। ସିଏ ଛାଟି ପିଟି ହେଉଛି ଯନ୍ତ୍ରଣାରେ। ମୁକ୍ତି ପାଇବାକୁ ପ୍ରାଣପଣେ ଚେଷ୍ଟା ଚଳେଇଛି। ଅସହାୟ ଭାବରେ ଆମମାନଙ୍କ ମୁହଁକୁ ମୁଚୁ ମୁଚୁ କରି ଅନାଉଚି ଆମଠୁ ସାହାଯ୍ୟ ଆଶାରେ। ଏମିତି ଗୋଟେ ଜୀବ ଉପରେ ପ୍ରହାର କରି ତାର ଜୀବନ ନେବାକୁ ମୋ ହାତ ଗଲା ନାହିଁ।

ବାଡ଼ିଟା ଧରି ଠିଆ ହେଇ କ'ଣ ମ ? ପିଟି ଦଉନ ? ମୋ ମୁହଁକୁ ଏମିତି ବଲ୍‌ବଲ୍ କି ଚାହିଁଛ କ'ଣ ? ଶୋଇବା ନା ରାତି ଅଧଟାରେ ଏମିତି ଥାଟ ପଲଟଣ ଧରି ଉଜାଗର ହେବା ?''—ବନାନୀ ଏତକ କହି ହାଇ ମାରିଲେ।

ମୁଁ ବାଡ଼ିଟାକୁ ବନାନୀଙ୍କ ହାତକୁ ବଢ଼ାଇ କହିଲି ନିଅ, ତମେ ପିଟ। ମୁଁ ପାରିବି ନାହିଁ। ଏମିତି ଯନ୍ତ୍ରଣାରେ ଛଟପଟ ହେଉଥିବା ଜୀବ ମୁଣ୍ଡରେ ମୁଁ ପାହାର ବସାଇ ପାରିବି ନାହିଁ।

—କେମିତିକା ମରଦ ତୁମେ ? ଯିଏ ଶୁଣିବ କ'ଣ କହିବ ? ସାମାନ୍ୟ ମୂଷାଟାଏ ମାରିପାରୁନା, ମୋ ହାତକୁ ବାଡ଼ି ବଢେଇ ଦଉଚ ? ଥରେ ପରା ତୁମେ ପୋଖରୀରୁ ଗୋଟେ ଜୀଅନ୍ତା ଭାକୁର ମାଛ ଆଣିଥିଲ। ସେଟାକୁ କାଟିବାକୁ କହିଲ। ମୁଁ କ'ଣ କାଟିଲି ? ତମେ ପୁଣି ସେ ମାଛଟା କେଉଟ ପାଖକୁ ନେଇ କଟେଇ ଆଣିଥିଲ। ଆଜି କୋଉ ଅକଲରେ ତମେ ମୋ ଆଡ଼କୁ ବାଡ଼ିଟା ବଢ଼େଇ ଦଉଚ ?

—ନା, ବନାନୀ ! ତମେ ଯାହା କହିଲେ ବି ଏମିତି ଜୀବନ ଯନ୍ତ୍ରଣାରେ ଛଟପଟ ହେଉଥିବା ଜୀବଟାକୁ ମୁଁ ମାରି ପାରିବି ନାହିଁ।

ଆନନ୍ଦ ଚନ୍ଦ୍ର ପହି

ବିସ୍ମୟ ମୋ ହାତରୁ ବାଡ଼ିଟା ଛଡ଼ାଇ ନେଇ କହିଲା — ମୁଁ ଏମିତି କେତେ ଏଣ୍ଡୁଅ, ସାପ, ବେଙ୍ଗ ମାରିଛି। ତମେ ଉଠ, ମୁଁ ଯନ୍ତା ମିଶାକି ପିଟି ଦେବି।

ଆମେ ସମସ୍ତେ ଆଡ଼େଇ ହୋଇଗଲୁ। ବିସ୍ମୟ ବାଡ଼ି ଉଁଚେଇଲା। ଦୁଃଖରେ ମୋ ଆଖି ବୁଜି ହୋଇଗଲା। କିନ୍ତୁ ପାହାରଟା ଲୁଗାଶୁଖା ତାରରେ ଅଟକି ଯାଇ ଝଣ କରି ଶବ୍ଦ କଲା। ତାରଟା ଝଣ୍‌ଝଣ ଶବ୍ଦ କରି ତଳେ ଛିଣ୍ଡି ପଡ଼ିଲା। ମୂଷାଟା ଭୟରେ ଛଟପଟ ହୋଇ ଯନ୍ତାକୁ ଖଡ଼ ଖଡ଼ କଲା।

ଆଉ ଗୋଟେ ପାହାର ଉଁଚାଇଲା ବେଳେ ବନାନୀ ଧରି ପକାଇଲେ — ଥାଉ, ନ ହେଲା ନାହିଁ।

ବିସ୍ମୟର ସାରାଦେହ ଥରୁଥିଲା। ତା ଆଖି ଦୁଇଟା ବଡ଼ ବଡ଼ ଦିଶୁଥିଲା। ବନାନୀ ତାକୁ ନେଇ ବିଛଣାରେ ଶୁଆଇ ଦେଲେ।

ଆମେ ସବୁ ସେମିତି ଠିଆ ହୋଇ ରହିଲୁ। ବନାନୀ ପୁଣି ପାଟି କଲେ — କାହିଁକି ବାପ ଝିଅ ଦିହିଁକି ଦିହେଁ ସେଠି ଠିଆ ହୋଇଛ ? ଆସ, ଶୋଇ ପଡ଼। ସିଏ ସେମିତି ଛାଟି ପିଟି ହୋଇ ଆପେ ମରିଯିବ।

ଆମେ ଫେରି ଆସି ଆଲୁଅ ଲିଭାଇ ଶୋଇଲୁ। କିନ୍ତୁ ମୋ ଆଖିକୁ ନିଦ ନାହିଁ। ମୋର ମନେହେଲା ସତେ ଯେପରି ମୋ ଅଣ୍ଟାରେ ଯନ୍ତା ପଡ଼ିଛି। ମୋ ଚାରିକଡ଼େ ଲୋକମାନେ ଠିଆ ହୋଇ ସମବେଦନାରେ ଜୁଡୁବୁଡୁ, କିନ୍ତୁ କେହି ଯନ୍ତା ଖୋଲୁ ନାହାଁନ୍ତି।

କିଛି ସମୟ ବ୍ୟବଧାନରେ ଯନ୍ତାଟା ଖଡ଼ ଖଡ଼ ଧଡ଼ ଧଡ଼ ହେଉଛି। ମୂଷାଟା ଯନ୍ତ୍ରଣାରେ ଛାଟି ପିଟି ହେଉଛି। ମୁକୁଳିବାର ଶେଷ ଚେଷ୍ଟା ଚଳେଇଛି।

ଯେତେ ଚେଷ୍ଟା କଲେ ବି ମୋ ଆଖିକୁ ନିଦ ଆସୁ ନାହିଁ। ଆଲୁଅ ଜଳାଇ ଦେଖିଲି ବନାନୀ, ବିସ୍ମୟ, ବର୍ଷା ସମସ୍ତେ ନିଦରେ ଶୋଇ ଯାଇଛନ୍ତି। କବାଟ ଫିଟାଇ ମୂଷାଯନ୍ତା ପାଖରେ ଠିଆ ହେଲି। ମୂଷାକୁ ଯନ୍ତାରୁ ମୁକୁଳାଇ ଦେଲେ ମୋ ମନ ହାଲୁକା ହେବ। ମୁଁ ଶୋଇବି ବୋଲି ଯନ୍ତାରେ ହାତ ଲଗାଇଲି। କିନ୍ତୁ ହଠାତ୍ ହାତଟା ଯନ୍ତା ପାଖରେ ଅଟକି ଗଲା। ଯଦି ଦରମରା ହୋଇଥିବା ମୂଷାଟାକୁ ଖୋଲିବାବେଳେ କି ଖୋଲିବା ପରେ ରାଗି ଯାଇ ସେ ମତେ କାମୁଡ଼ି ଦିଏ। ପରିଣାମ ବଡ଼ ଭୟାବହ ହେବ।

ଯନ୍ତା ପାଖରୁ ଫେରି ଆସିଲି। ମୂଷାଟା ସେମିତି ଯନ୍ତାରେ ଛାଟି ପିଟି ହେଉଥିଲା। କବାଟ ବନ୍ଦ କଲି। ଲାଇଟ ଲିଭାଇ ପୁଣି ଶୋଇବାକୁ ଚେଷ୍ଟା କଲି। ନା, ନିଦ ହେଉ ନାହିଁ। ଦେହଟା ଭିତରେ ଭିତରେ ଦୋହଲୁଛି। ଦେହ ଭିତର ଯନ୍ତ୍ରପାତି ସବୁ ଦେହ ଭିତରେ ଥର ଥର କମ୍ପୁଛି।

ଆନନ୍ଦ ଚନ୍ଦ୍ର ପତି

କାନରେ ଆଙ୍ଗୁଠି ଦେଲି। ଯନ୍ତାର ଖଡ଼ ଖଡ଼ ଶବ୍ଦ ଆଉ ଶୁଣା ଗଲା ନାହିଁ। ଅନେକ ସମୟ ଆଖି ବୁଜି ପଡ଼ି ରହିବା ଭିତରେ ନିଦ ଆସିଗଲା।

ସକାଳୁ ପ୍ରଥମେ ବନାନୀଙ୍କର ନିଦ ଭାଙ୍ଗିଲା। ସିଏ ମତେ ଉଠେଇଲେ। ମୁଁ ପିଲାମାନଙ୍କୁ ଉଠାଇଲି। କାନ ଡେରିଲି। କିଛି ଶବ୍ଦ ଶୁଭୁ ନାହିଁ। ମୂଷାଟା ବୋଧହୁଏ ଯନ୍ତାରେ ମରିଗଲା।

ସନ୍ତର୍ପଣରେ କବାଟ ଫିଟାଇ ପ୍ରଥମେ ଯନ୍ତାକୁ ଚାହିଁଲି। ଯନ୍ତାରେ ମୂଷାଟି ସ୍ଥିର ହୋଇ ଯାଇଛି। ଆମେ ସମସ୍ତେ ମୂଷା ଚାରିପଟେ ବେଢ଼ିଗଲୁ, ଶବ ଚାରିପଟେ ତାର ଆତ୍ମୀୟ ସ୍ୱଜନ ବେଢ଼ିଲା ପରି। କିନ୍ତୁ ଆମ ସମସ୍ତଙ୍କୁ ବିସ୍ମିତ କରି ମୂଷାଟା ହଠାତ୍ ପୁଣି ଛଟପଟ ହେଲା। ଆମେ ଭୟ ପାଇ ଦୂରେଇ ଗଲୁ।

ଦେହର ଶେଷ ରକ୍ତ ବିନ୍ଦୁ ଥିବାଯାଏ ମଣିଷ ଜୀବନ ସଂଗ୍ରାମ ଅବ୍ୟାହତ ରଖେ। ମୂଷାଟି ତାର ଜୀବନ ସଂଗ୍ରାମ ଜାରି ରଖିଛି।

ବନାନୀ ପ୍ରସ୍ତାବ ଦେଲେ—ଯନ୍ତାଟିକୁ ମୂଷା ସହିତ ଛାତ ଉପରେ ଥୋଇ ଦିଅ। ମୂଷାଟିକୁ କାଉ ନେଇଯିବ।

ଯନ୍ତାରେ ବନ୍ଧା ଯାଇଥିବା ଡୋରିକୁ ଧରି ଯନ୍ତା ଛାଏଁ ମୂଷାଟିକୁ ଛାତ ଉପରକୁ ନେଇଗଲି। ଯନ୍ତାଟିକୁ ଛାତ ଉପରେ ଥୋଇ, ଆମେ ଅନେକ ସମୟ କିଛି ଦୂରରେ ଲୁଚି ରହିଲୁ ଯେମିତି ଜାଲ, ଫାଶ କି କାଣ୍ଡିଆଁ ବସାଇ ବାଣୁଆ ଖଣ୍ଡେ ଦୂରରେ ଲୁଚି ବସେ। ଅନେକ କାଉ କାଆ, କାଆ ଶବ୍ଦ କରି ଯନ୍ତା ଉପରେ ଚକର କାଟି ଉଡ଼ିଲେ। କିନ୍ତୁ ଯନ୍ତାକୁ ଭୟକରି ମୂଷା ପାଖକୁ କେହି ଆସିଲେ ନାହିଁ।

ନା, ଏମିତି ହେବ ନାହିଁ। ଯନ୍ତାଟାକୁ ଖୋଲି ନ ଦେଲେ କାଉ ନେବେ ନାହିଁ। ଲମ୍ବ ଠେଙ୍ଗାଟିଏ ଆଣି ଦୂରରେ ଠିଆ ହୋଇ ଯନ୍ତାଟିକୁ ଠେଙ୍ଗାରେ ଡେଡ଼ି ଧରି ଯନ୍ତା ଖୋଲି ଦେଲି। ମୂଷାଟି ଯନ୍ତାରୁ ମୁକୁଳି ଆସିଲା। କିନ୍ତୁ ଚାଲି ପାରିଲା ନାହିଁ। ସେଇଠି ସେମିତି ପଡ଼ି ରହି ବିକଳ ହେଲା। ବିସ୍ମୟ ଧାଇଁ ଯାଇ ପାଣି ଆଣି ତା ମୁହଁରେ ଦେଲା।

ମୂଷାଟିକୁ ଆଉ କେତେବେଳେ ଦେଖିଲେ ଚିହ୍ନିହେବ ବୋଲି ମୂଷାର ବେକ ପାଖରେ କାଳି ଡାଳି ଚିହ୍ନଟିଏ ଆଙ୍କିଲା ବିସ୍ମୟ।

ମୂଷାଟି ଆସ୍ତେ କଡ଼ ଲେଉଟାଇ ଉଠିଲା। ଘୁଷୁରି ଘୁଷୁରି ଚାଲିଲା। ଚାଲି ଚାଲି ଛାତ ଉପରେ ଥିବା ଫୁଲ କୁଣ୍ଡ ସନ୍ଧିରେ ଲୁଚିଲା। ତଳୁ ବନାନୀ ଡାକ ପକାଇଲେ—ଯନ୍ତାଟା ଧରି ତମେ ସବୁ ତଳକୁ ଚାଲି ଆସ। ଏଣିକି ମୂଷାକୁ କାଉ ନେଇ ଯିବ।

ଆନନ୍ଦ ଚନ୍ଦ୍ର ପଣ୍ଡି

ବିସ୍ମୟ ଜିଦ୍ ଧରିଲା — ନା, ମୁଁ ଯିବି ନାହିଁ।

ମୁଁ କିନ୍ତୁ ବିସ୍ମୟକୁ ଜୋର୍ ଜବରଦସ୍ତ ଛାତ ଉପରୁ ତଳକୁ ନେଇ ଆସିଲି। ଆମେ ତଳକୁ ଆସିବାର ଅଧଘଣ୍ଟାଏ ପରେ କାଉମାନଙ୍କ ଗହଳି ବଢ଼ିଗଲା। ଛାତ ଉପରେ ଅନେକ କାଉ ମେଳା ମେଳା ହେଲା ହେଲା। କର୍କଶ ସ୍ୱରରେ ରାଉ ରାଉ ହେଲେ।

ବିସ୍ମୟ ଆମ କଥା ନ ମାନି ଛାତ ଉପରକୁ ଉଠିଗଲା। ବାଡି ଧରି କାଉମାନଙ୍କୁ ଗୋଡ଼ାଇଲା। ଫୁଲ କୁଣ୍ଡ ସନ୍ଧିର ଏପଟ ସେପଟ ଚାହିଁଲା। ମୂଷାଟା କାହିଁ କେଉଁଠି ହେଲେ ନାହିଁ। ବିସ୍ମୟ କାନ୍ଦ କାନ୍ଦ ହୋଇ ଛାତରୁ ତଳକୁ ଓହ୍ଲାଇ ଆସୁ ଆସୁ ଘୋଷଣା କଲା କାଉମାନେ ମୂଷାଟାକୁ ନେଇଗଲେ। ଛାତ ଉପରେ ମୂଷାର ରୁମଟାଏ ବି ନାହିଁ।

କାକୁସ୍ତ ମୂଷାଟାର ଅସହାୟ ମୁହଁଟା ମୋ ଆଖି ସାମନାକୁ ବାରମ୍ବାର ଆସି ଯାଉଥିଲା। ମୋତେ କାମୁଡ଼ି ଖଣ୍ଡିଆ କରିଥିବା ମୂଷାଟା ଯେ ମୋର ଶତ୍ରୁ, ଏକଥା ମୁଁ ଅବହିତ ଥିଲି। ମୋ ଆଙ୍ଗୁଠିରେ ତାର ଦାନ୍ତ ଚିହ୍ନରୁ ତାର ଶତ୍ରୁତାର ସ୍ୱାକ୍ଷର ମୋ ମନରେ ବାରମ୍ବାର ଚିହ୍ନ ଲଗାଉଥିଲେ ମଧ୍ୟ ଭୟଭୀତ, ମୁମୂର୍ଷୁ ମୂଷାଟିର ଦୟନୀୟ ମୃତ୍ୟୁ ମୋ ମନକୁ ଆଚ୍ଛନ୍ନ କରି ରଖିଥିଲା।

ଅନେକ ଦିନ ମୂଷାଟା ମୋ ମନରେ ଗଡ଼ପଡ଼ ହୋଇ ଧୀରେ ଧୀରେ ଅପସରି ଗଲା।

ଦିନେ ମୁଁ ଦାଢ଼ି କାଟିବାକୁ ଝର୍କା ପାଖରେ ବସିଛି, ଝର୍କା ସେପାଖରେ ଦେଖିଲି ସେଇ ମୂଷାକୁ। ଭୂତ ଦେଖିବା ପରି ଭୟଭୀତ ହେଲି। କାଉ ମୁହଁରେ ଶିକାର ହୋଇଥିବା ମୂଷାଟା ପୁଣି ଜୀବନ ପାଇଲା କେମିତି ?

ଏଇଟା କ'ଣ ସେଇ ମୂଷାର ଭୂତ ? ମୂଷାମାନେ ମରିଗଲା ପରେ ମଣିଷମାନଙ୍କ ପରି ଭୂତପ୍ରେତ ହେବାର ବ୍ୟବସ୍ଥା କ'ଣ ଅଛି ? ଏଟା କ'ଣ ଆଉ ଗୋଟେ ମୂଷା ? ନା, ସେ ମୂଷାକୁ ଚିହ୍ନିବାରେ ମୋର କିଛି ଭୁଲ୍ ହୋଇ ନ ପାରେ। ତା ବେକରେ କାଳି ଦାଗ। ମୋ ପୁଅ ହାତ ଅଙ୍କା କାଳି ଦାଗ।

ମୂଷାଟି କିନ୍ତୁ ମୋତେ ଆଦୌ ଭୟ କରୁ ନାହିଁ। ଝର୍କା ସେ ପାଖରେ ମୋର ଅତି ନିକଟରେ ଅର୍ଥାତ୍ ଫୁଟେ ଦେଢ଼ଫୁଟ ଦୂରରେ ଠିଆ ହୋଇ ମୋ ମୁହଁକୁ ଚାହିଁଛି। କଟମଟ କରି ମୋ ଆଖିରେ ଆଖି ମିଶାଉଛି। ଝର୍କାର ରେଲିଂ ଫାଙ୍କରୁ ମୋତେ ଚିହ୍ନୁଛି।

ମୁଁ ବିସ୍ମିତ ଯେତିକି ଭୟଭୀତ ସେତିକି। ମୂଷାଟା ମୋତେ ଭୟ ନ କରି ମୋର ଏତେ ନିକଟରେ ଠିଆ ହୋଇ ମୋ ମୁହଁକୁ ଚାହିଁଛି। ମୋ ମୁହଁରେ ସିଏ କ'ଣ ଏମିତି ଦେଖୁଛି ?

ଆନନ୍ଦ ଚନ୍ଦ୍ର ପହି

ପାଖରେ ଥୁଆ ହୋଇଥିବା ଦର୍ପଣଟା ଉଠାଇ ନିଜ ମୁହଁକୁ ଓ ନିଜକୁ ଦେଖିଲି। ମୁଁ ହଠାତ୍ ଚମକି ପଡ଼ିଲି। ମୋ ନିଜକୁ ମୁଁ ନିଜେ ଚିହ୍ନି ପାରିଲି ନାହିଁ। ମୋ ମୁହଁସାରା ଦାଢି ଭର୍ତ୍ତି। ପିନ୍ଧିଛି ଧଳା ଟ୍ରାଉଜରଟାଏ। ଦେହରେ ଗଞ୍ଜି। ମୁଁ ଜଣେ କଏଦୀ ପରି ଦିଶୁଛି। ମୂଷାଟି ଝର୍କାର ରେଲିଂ ସେପଟରେ ଥାଇ ମୋତେ ଦେଖୁଛି।

ମୁଁ ଅନୁଭବ କଲି ମୂଷାଟି ସିନା ଗୋଟିଏ ଦିନ ଯନ୍ତାରେ ପଡ଼ି ଛଟପଟ ହୋଇଥିଲା, କିନ୍ତୁ ମୁଁ ସାରା ଜୀବନ ଯନ୍ତାରେ ବନ୍ଦ ହୋଇ ଯାଇଛି। ବର୍ତ୍ତମାନ ଯନ୍ତା ବାହାରେ ମୂଷା, ଯନ୍ତା ଭିତରେ ମୁଁ। ମୁଁ ପ୍ରତିଦିନର ରୁଟିନ୍-ଯନ୍ତାରେ ଛନ୍ଦା। ମୋର ଚଲାପଥ, ଗତିପଥର ସୀମା ନିର୍ଦ୍ଦିଷ୍ଟ। ମୁଁ ପଡ଼ି ଯାଇଥିବା ଯନ୍ତାର ବାଡ଼ ଦିନକୁ ଦିନ ଦୃଢ ହେଉଛି, ବନ୍ଧନ ନିବିଡ଼ ହେଉଛି। ସେଥିରୁ ମୁକ୍ତି ପାଇଁ ଯେତେ ଛାଟି ପିଟି ହେଲେ ଦଉଡ଼ି ସେତେ ପାକଲ ହେଉଛି, ଗଣ୍ଠି ସେତେ ଟାଣ ହେଉଛି। ମୋ ଚାରି ପାଖର ପାଚେରି ଧୀରେ ଧୀରେ ଉଚ୍ଚ ହୋଇ ଆକାଶ ଛୁଇଁବାକୁ ଯାଉଛି।

ମଣିଷର ଜନ୍ମ ଯନ୍ତାରେ। ମଣିଷ ଆଜନ୍ମ ବନ୍ଦୀ। ମୁକ୍ତି ତାର ଭ୍ରମ। ତା ନିଜ ଘର ତାର କାରା। ଯନ୍ତା ବାହାରେ ମଣିଷର ଜୀବନ ନାହିଁ। ମଣିଷ ଯାବତ୍ ଜୀବନ କାରାରୁଦ୍ଧ।

ମୂଷା ମୋତେ କଟ ମଟ କରି ଚାହିଁଥିଲା। ମୁଁ ମୁହଁ ତଳକୁ କରି ଦେଲି। କଇଁଛ ପରି ମୁଁ ନିଜ ମୁହଁକୁ ନିଜ ଭିତରେ ଛପାଇ ନେଲି।

ମୂଷା ମୋତେ ଡିମା ଡିମା ଆଖି କାଢି ଚାହିଁ ଥିଲା। ମୁଁ ମୋ ଭିତରେ ନିରାପଦ ଆଶ୍ରୟ ଖୋଜୁଥିଲି। ମୁଁ ମୂଷା ଆଖିରୁ ନିଜ ମୁହଁକୁ ଲୁଚାଉ ଥିଲି, କାଳେ ମୂଷା ମୋ ମୁହଁରୁ ସମଗ୍ର ମଣିଷ ଜାତିର ଅସହାୟତାକୁ ପଢିନେବ।



# ଭୂଇଁ ଧରାଣ୍ଟୁଥିବା ଚରିତ୍ର

ତୋ ଆଖିର ଇହ ଦେଖିବି ନା ମୁଁ ମୋ ବିଜିନେସ୍ ଦେଖିବି ? ମାଇଚିଆ ଟୋକାଙ୍କୁ ହିରୋଇନ୍ କରିବା ଯୁଗ ଆଉ ନାହିଁ। ନେ, ତୋ ଦରମା ଟଙ୍କା ଧ। ବେଡିଂପତ୍ର ବାନ୍ଧି ଗାଆଁକୁ ଯା।

ପ୍ରଯୋଜକଙ୍କ ଏମିତି କଥା ଉମାକାନ୍ତକୁ ଖୁବ୍ କଷ୍ଟ ଦେଲା। ଦୁଃଖ, ଅଭିମାନ ଆଉ ଅପମାନରେ ତା ଦିହ, ମୁହଁ ଜଳିଗଲା। ଉମା କିଛି ନ କହି ତଳକୁ ମୁହଁ ପୋତି ଠିଆ ହେଲା।

ଝିଲିମିଲି ଅପେରାର ପ୍ରଯୋଜକ ପୁଣି ଗର୍ଜି ଉଠିଲେ — ତୁ କ'ଣ କହୁଚୁ ତତେ ବସେଇକି ମୁଁ ଦରମା ଦେବି ? ଆଉ କୌଣସି ଅପେରାରେ ମାଇଚିଆ ଟୋକା ହିରୋଇନ୍ ରୋଲ୍ କରୁ ନାହାଁନ୍ତି। ତୁ ମୁହଁ ଶୁଖେଇଲେ କ'ଣ, ମୁଣ୍ଡ ବାଡେଇ ଦେଲେ କ'ଣ ? ଯେତିକି ଦିନ ଚାଲିଥିଲା ମୁଁ ଚଲେଇ ଥିଲି। ଏବେ ସେସବୁ ଆଦୌ ସମ୍ଭବ ନୁହଁ। ମାଇଚିଆ ଟୋକା ହିରୋଇନ୍ ରୋଲ୍ କରୁଚି ବୋଲି ଜାଣିଲେ ଏ ଦଳକୁ କେହି ଆଡ୍‌ଭାନ୍ସ ଦେବେ ନାହିଁ। ଏଠି ଏମିତି ଠିଆ ହେଲୁ କାହିଁକି ? ଯା, ମୋର ଅନେକ କାମ ଅଛି। ମୁଁ ତୋ ସାଙ୍ଗରେ ଏତେ ବକର ବକର ହେଇ ପାରିବି ନାହିଁ।

ପ୍ରଯୋଜକ ରିହରସାଲ୍ ଘର ଭିତରକୁ ପଶିଗଲେ। ଉମାକାନ୍ତ ସେଇଠି ସେମିତି ତଳକୁ ମୁହଁ କରି ଠିଆ ହୋଇଥିଲା। ବୁଢା ଆଙ୍ଗୁଠି ନଖରେ ମାଟି ଖୋଳୁଥିଲା। ତା ଅତୀତ ଜୀବନକୁ ସେଇଠି ଠିଆ ଠିଆ ଉଖାରୁଥିଲା। ତାକୁ ଯେତେବେଳେ ମାତ୍ର ବାର ବର୍ଷ, ସେଇ ଦିନଠୁ ସିଏ ନାଚରେ ମିଶିଛି। ସପ୍ତମ ଶ୍ରେଣୀ ପରୀକ୍ଷା ଦେଇ ଗାଆଁ ଆମ୍ବତୋଟାରେ ବୁଲୁଥିଲାବେଳେ ତାକୁ ଏଇ ଝିଲିମିଲି ଅପେରାର ପ୍ରଯୋଜକ ଅପେରାକୁ ଆଣିଥିଲେ। ତାର ସୁନ୍ଦର ଚେହେରା ପାଇଁ

ଆନନ୍ଦ ଚନ୍ଦ୍ର ପହି

ଉମାକାନ୍ତ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା। ପ୍ରଥମେ ସିଏ ଗ୍ରୁପ୍‌ଡ୍ୟାନ୍ସରେ ନାଚୁଥିଲା। ତାର ତିନି, ଚାରି ବର୍ଷ ପରେ ଉମାକାନ୍ତ ହେଲା ହିରୋଇନ୍। ଏଇ ହିରୋଇନ୍ ଭାବେ ସିଏ ଅଳ୍ପ ଦିନରେ ନାଆଁ କଲା। ଉମାକାନ୍ତରୁ ସିଏ ହେଲା ଉମା।

ବର୍ତ୍ତମାନ ସିଏ ପଚିଶ ବର୍ଷର ଯୁବକ ହେଲେ ବି ଯୁବତୀ ପରି ତା ମୁଣ୍ଡର କେଶ, ଭାବ, ଭଙ୍ଗୀ, ଚାଲି, ଠାଣି, ଚାହାଁଣି। ଦେହରେ ସିଏ ଯୁବକ କିନ୍ତୁ ମନ, ଆଉ ଆଚରଣ ଆଉ ସ୍ୱଭାବରେ ଯୁବତୀ। ଅନେକ କଅଁଳ କୁଆଁରୀ ଝିଅର ଚରିତ୍ରକୁ ଏତେ ଦିନ ଧରି ନିଜ ଉପରେ ଥୋଇ ଚରିତ୍ରମାନଙ୍କ ନିଖୁଣ ଅଭିନୟ କରିବାକୁ ଯାଇ ପରସ୍ତ ପରସ୍ତ ସେମାନଙ୍କ ଆଚାର, ବ୍ୟବହାର, ଚାଲି, ଚଳଣି, ମଡ୍ରେଇ ଯାଇଛି ନିଜ ଦେହ ଓ ମନର କାନ୍ଥର ଚଉହଦୀରେ। ସିଏ ଆଜି ତା ଭିତରେ ନାହିଁ। ସେଠି ଶୋଇଚି ଅନୁପମା, ଅନନ୍ୟା ସ୍ୱପ୍ନବିଳାସୀନୀ କଅଁଳ କୁଆଁରୀଟିଏ।

ହିରୋଇନ୍ ମେକ୍‌ଅପ୍ ନେବା ପରେ ସିଏ ଦର୍ପଣରେ ନିଜକୁ ଅନେକ ଦେଖିଛି। ନିଜର ସୌନ୍ଦର୍ଯ୍ୟ ପାଇଁ ନିଜେ ଗର୍ବ ଅନୁଭବ କରିଛି। ଯେ କୌଣସି ସୁନ୍ଦରୀ ଝିଅଠୁ ଅଧିକ ସୁନ୍ଦର ସିଏ। ତାର ଆଖି, ନାକ, ଓଠ, ଖୁବ୍ ଆକର୍ଷଣୀୟ। ଦେହର ରଙ୍ଗ କଞ୍ଚା ସୁନା ପରି ହଳଦୀ ଗୁରୁଗୁରୁ।

ଉମାର ଅଭିନୟରେ ମୁଗ୍ଧ ହୋଇ ଅନେକ ଦର୍ଶକ ତାକୁ ମଞ୍ଚ ଉପରେ ପୁରସ୍କାର ଦେଇଛନ୍ତି। ମଞ୍ଚରୁ ଗ୍ରୀନ୍‌ରୁମ୍‌କୁ ସିଏ ଫେରିବା ବାଟରେ ତାର ସୌନ୍ଦର୍ଯ୍ୟ ମୁଗ୍ଧ ଯୁବକ ତାକୁ ଅନେକ ଥର ଆଲିଙ୍ଗନ କରିଛନ୍ତି।

ଉମାକୁ ଝିଲିମିଲି ଅପେରାରୁ ନେଇ ଯିବାକୁ ଅନେକ ଅପେରା ପାର୍ଟି ଅଧିକ ଦରମା, ଅଧିକ ସୁବିଧା ଦେବାକୁ ପ୍ରତିଶ୍ରୁତି ଦେଇ ପ୍ରଲୋଭିତ କରିଛନ୍ତି। କିନ୍ତୁ ସିଏ ସେସବୁ ଲୋଭକୁ ଆଡେଇ ଆସିଛି।

ଉମାର ସୁନ୍ଦର ରୂପ ଆଉ ସୁନ୍ଦର ଅଭିନୟ ପାଇଁ ଝିଲିମିଲି ଅପେରା ଏତେଦିନ ପର୍ଯ୍ୟନ୍ତ ଲୋକମାନଙ୍କଠାରୁ ଆଦର ପାଇଛି। କିନ୍ତୁ ଆଜି ତାକୁ ହିଁ କୁହାଯାଉଛି ଦଳ ଛାଡ଼ି ଚାଲିଯିବାକୁ। ଦଳରେ ଆଜି ସମସ୍ତେ ଦରକାରୀ କେବଳ ତାକୁ ଛାଡି।

ପ୍ରଯୋଜକ ପୁଣି ଥରେ ରିହରସାଲ୍ ରୁମ୍‌ରୁ ବାହାରକୁ ଆସିଲେ। ଉମା ସେମିତି ସେଇଠି ମୁହଁ ପୋତି ଠିଆ ହୋଇଛି। ତା ପାଦ ତଳ ଭୂଇଁରେ ଟୋପା ଟୋପା ଲୁହ। ମୁହଁଟା ଲୁହ ସାଲୁବାଲୁ। ଆଖି ଦୁଇଟା ଗେଣ୍ଡା ପରି ଫୁଲି ଯାଇଛି। ମନ୍ଦାର ଫୁଲ ପରି ଲାଲ ପଡ଼ି ଯାଇଛି।

ଆନନ୍ଦ ଚନ୍ଦ୍ର ପହି

ଉମା ପ୍ରଯୋଜକଙ୍କ ହାତ ଧରି ପକାଇଲା — ମୋ କଥା ଟିକେ ବିଚାର କରନ୍ତୁ ସାର୍। ମୁଁ ଏବେ କୋଉଠି କ'ଣ କରିବି ? ଏତେ ହଠାତ୍ ମୁଁ କୁଆଡେ ଯିବି ?

ଏଇ ଦୁଇ ପଦର ଶେଷ ଆଡକୁ ସିଏ ଏତେ ଭାବପ୍ରବଣ ହୋଇ ଯାଇଥିଲା ଯେ ସିଏ ବଡ ପାଟିରେ କାନ୍ଦି ପକାଇଲା। ଅପେରାର ସମସ୍ତ ଲୋକ ଉମାର କାନ୍ଦ ଶୁଣି ରିହରସାଲ୍ ରୁମ୍‌ରୁ ବାହାରକୁ ଚାଲିଆସିଲେ।

ପ୍ରଯୋଜକଙ୍କ ମନ ଟିକେ ତରଳି ଗଲା। ପ୍ରକୃତରେ ଏତେଦିନ ଧରି ଅପେରା ପାଇଁ ନିଜକୁ ଉତ୍ସର୍ଗ କରିଥିବା ଉମା ପରି ଅଭିନେତାକୁ ହଠାତ୍ ତଡ଼ି ଦେବାଟା ଠିକ୍ ହେଉନାହିଁ। ତାକୁ ଏଠୁ ତଡ଼ିବା ପୂର୍ବରୁ ଅତିକମ୍‌ରେ ମାସେ, ଦୁଇମାସର ନୋଟିସ୍ ଦିଆଯିବା ଉଚିତ୍।

ଉମା ପରିବର୍ତ୍ତେ ହିରୋଇନ୍ ରୋଲ୍ କରିବା ପାଇଁ ଯେଉଁ ରୋଜାଲୀନ ମହାନ୍ତି ଆସିଛନ୍ତି ସିଏ ଅଭିନୟ କ୍ଷେତ୍ରରେ ଏକଦମ୍ ନୂଆ। ଅବଶ୍ୟ ରୋଜାଲୀନ ତାଙ୍କ କଲେଜ ଜୀବନରେ କେତେଟା କଲେଜଡ୍ରାମାରେ ହିରୋଇନ୍ ରୋଲ୍ କରି ପ୍ରଶଂସିତା ହୋଇଥିଲେ। କିନ୍ତୁ ତାର ଉପରେ ସର୍କସ କରିବା ପରି ଅପେରାର ଅଭିନୟ ଅତ୍ୟନ୍ତ କଠୋର। ପ୍ରମ୍ପଟିଙ୍ଗ ନାହିଁ, ଚାରିଆଡ଼ ଖୋଲା, ମେଲା ଜନ-ସମୁଦ୍ର। ଅପେରାରେ ଅଭିନୟ ପାଇଁ ଗୋଟେ ଦୁଇଟା କଲେଜ ଡ୍ରାମାର ଅଭିନୟର ଅଭିଜ୍ଞତା କିଛି ନୁହେଁ। ରୋଜାଲୀନଙ୍କର କଠୋର ତାଲିମ ଦରକାର।

ପ୍ରଯୋଜକ ଉମାକୁ କହିଲେ- ଆଚ୍ଛା, ତୁ କିଛି ଦିନ ରହ। ଏଣିକି ତୋର କାମ ହେଲା ରୋଜାଲୀନଙ୍କୁ ତୋର ଏତେ ଦିନର ଅଭିନୟର କଳା କୌଶଳ ଶିଖାଇ ତାଙ୍କୁ ଜଣେ ସଫଳ ଅଭିନେତ୍ରୀ ଭାବେ ଗଢ଼ିବା।

ହିରୋଇନ୍‌ର ନିର୍ଦ୍ଦେଶକ ଭାବେ ନୂତନ ନିଯୁକ୍ତି ପାଇଥିବାରୁ ଉମାକୁ ସମସ୍ତେ ବଧାଇ ଜଣାଇଲେ। କିନ୍ତୁ ଉମା ଜାଣିଥିଲା ଏଟା ଗୋଟେ ଅଳ୍ପଦିନିଆ ବନ୍ଦୋବସ୍ତ। ପୁଣି ତାକୁ ଯାହା କରିବାକୁ ପଡିବ ସେଟା ତା ନିଜର କ୍ଷତି କରିବ। ଯେଉଁ ରୋଜାଲୀନ ତା ବଦଳରେ ଦଳରେ ସ୍ଥାନ ପାଇଛି ତାକୁ ଅଭିନୟ ଶିକ୍ଷା ଦେଲେ ରୋଜାଲୀନର ସ୍ଥିତି ଦଳରେ ଦୃଢ ହେବ। ଉମା ଆଉ ଦଳରେ ସ୍ଥାନ ଫେରି ପାଇବାର ସମ୍ଭାବନା ସମାଧି ପାଇବ। ଇଏ ନିଜ ହାତରେ ନିଜ ପାଇଁ ଗାତ ଖୋଳିବା ସହିତ ସମାନ। ତଥାପି ତାକୁ ଏ ପ୍ରସ୍ତାବ ଗ୍ରହଣ କରିବାକୁ ପଡ଼ିବ। ତା ପାଖରେ ଆଉ କିଛି ବିକଳ୍ପ ନାହିଁ।

ଉମା ନିଜେ ଯେଉଁ ଭୂମିକାରେ ଅଭିନୟ କରୁଥିଲା ସେ ସବୁ ରୋଜାଲୀନଙ୍କୁ ଶିକ୍ଷା ଦେଲାବେଳେ ଉମାର ଛାତିରେ କଣ୍ଟା ପଶିବା ପରି କଷ୍ଟ ଲାଗୁଥିଲା।

ହିରୋ ନଗେନ୍ଦ୍ର ସାଙ୍ଗରେ ରୋଜାଲୀନର ଅଭିନୟ ଉମା ଦେହରେ ନିଆଁ ଲାଗୁଥିଲା। ତଥାପି ଦେହର ଦାହକୁ ଉମା ନିଜ ଭିତରେ ସମ୍ଭାଳି ରଖୁଥିଲା।

ମାସ ଦୁଇଟାର ପ୍ରସ୍ତୁତି ପରେ ଝିଲିମିଲି ଅପେରା ଦଳ ଶୋ କରିବାକୁ ବାହାରକୁ ବାହାରିଲା। ପୋଷ୍ଟର ସବୁରେ ଉମା ବଦଳରେ ରୋଜାଲୀନଙ୍କ ଛବି ଅଙ୍କାଗଲା। ଦୁଇଟା ଟ୍ରକ୍‌ରେ ଅପେରାର ଜିନିଷପତ୍ର ବୋଝେଇ ହେଲା। ଆଉ ଗୋଟିଏ ଟ୍ରକରେ ଅଭିନେତା, ମିଉଜିକ୍, ଲାଇଟ ଓ ସାଉଣ୍ଡ ପାର୍ଟି। ମ୍ୟାନେଜର ଗୋଟି ଗୋଟିକି ନାଆଁ ଡାକିଲେ। ସମସ୍ତେ ଜଣ ଜଣକି ଟ୍ରକ୍‌ରେ ଚଢିଲେ। ସେଥିରେ ଉମାର ନାଆଁ ନାହିଁ। ତାର ନାଆଁ ନ ରହିବା କଥା। ସିଏ ଆଉ ଅଭିନେତା ନୁହଁ।

ଆଉ ରହିଲା କାରଟା। ସେଥିରେ ନିର୍ଦ୍ଦେଶକ, ପ୍ରଯୋଜକ, ଆଉ ରୋଜାଲୀନ। ଆଗ ସିଟ୍‌ଟାରେ କେବଳ ଡ୍ରାଇଭର। ତାକୁ ହୁଏତ ସେଇ ଡ୍ରାଇଭର ପାଖରେ ବସିବାକୁ ପ୍ରଯୋଜକ କହିବେ। ରୋଜାଲୀନ ଓ ନିର୍ଦ୍ଦେଶକ କାର୍‌ରେ ବସିଲେ। ପ୍ରଯୋଜକ ଉମା ଆଡକୁ ଆସିଲେ। ଉମା ସୌଜନ୍ୟ ଓ ଉତ୍କଣ୍ଠା ଦୃଷ୍ଟିରୁ ପ୍ରଯୋଜକଙ୍କ ଆଡକୁ ଆଗେଇ ଆସିଲା। ମଝିରେ ଉଭୟଙ୍କର ଭେଟ ହେଲା। ପ୍ରଯୋଜକ କହିଲେ — ଉମା ! ତୋ କାମ ଏବେ ଶେଷ ହେଲା। ତୁ ଏଣିକି ତୋ ନିଜ ବ୍ୟବସ୍ଥା କରିବୁ।

ଉମାର ପାଦତଳ ଭୂଇଁଟା ଥରିଲା। ସିଏ ଆଉ କିଛି ନ କହିପାରି ସେଇ ରାସ୍ତା ଉପରଟାରେ ବସିପଡିଲା। ସିଏ ପ୍ରକୃତିସ୍ଥ ହେବାବେଳକୁ ଟ୍ରକ୍ ଆଉ କାର୍ ଅନେକ ଦୂର ଚାଲି ଗଲାଣି।

ଉମା ଏବେ ଗାଆଁରେ ବେକାର ହୋଇ ବସିଛି। ଗାଆଁ, ସାଇ ଆଉ ଘରଲୋକେ ତାକୁ ବିଭିନ୍ନ ପ୍ରଶ୍ନ ପଚାରୁଚନ୍ତି। ପ୍ରତ୍ୟେକ ଲୋକକୁ ସମାନ ପ୍ରଶ୍ନର ଉତ୍ତର ଦେଇ ଦେଇ ତାକୁ ବିରକ୍ତ ଲାଗୁଛି। ବିଲବାଡ଼ି କାମ ତାକୁ କିଛି ଆସେ ନାହିଁ। ସେ ସବୁ କାମ କରିବାକୁ ତାର ମାନସିକ ପ୍ରସ୍ତୁତି ନାହିଁ। ପାଠ ମଧ ସିଏ ସପ୍ତମ ଶ୍ରେଣୀରୁ ଛାଡ଼ିଛି। ଏ ବୟସରେ ପାଠ ପଢି କିଛି କରି ପାରିବା ପରି ସମ୍ଭାବନା ଥିବା କଥା ତାକୁ ଲାଗୁ ନାହିଁ।

ଝିଅପିଲା ପରି ମୁଣ୍ଡରେ ଗୋଛାଏ ବାଳ ତାକୁ ସବୁଠି ନିଆରା କରି ଦେଖାଉଛି। ବାଳରେ ତେଲ ମାରିବା, ତାକୁ ଧୋଇବା, ଶୁଖାଇବା, କୁଣ୍ଡାଇବା ଆଉ ବାନ୍ଧିବା ଏବେ ଉମାର ମୁଖ୍ୟ କାମ।

ବିଭିନ୍ନ ଅପେରା ପାର୍ଟିର ବିଜ୍ଞାପନ ପଢିବା ତାକୁ କଷ୍ଟ ଦେଉଥିଲେ ମଧ ଖବରକାଗଜରୁ ସେତକ ସିଏ ଥରେ ନୁହଁ, ଅନେକଥର ପଢୁଥିଲା। ବିଜ୍ଞାପନରେ

ପ୍ରକାଶ ପାଉଥିଲା କେଉଁ ଅପେରାଦଳର ଏ ବର୍ଷର ନୂଆ ନାଟକ କ'ଣ, ନାଟ୍ୟକାର କିଏ, କିଏ ନିର୍ଦ୍ଦେଶନା ଦେଇଛନ୍ତି ଓ କିଏ କିଏ ଅଭିନୟ କରିଛନ୍ତି। ନିଜ ନାଆଁ ଯେ ତାଲିକାରେ ନାହିଁ ବୋଲି ଜାଣି ମଧ୍ୟ ଉମା ତା ନାଆଁଟା ସେଥିରୁ ଖୋଜିବାରେ ଆନନ୍ଦ ପାଉଥିଲା।

ଦିନେ ଖବରକାଗଜର ଗୋଟିଏ ଛୋଟ ବିଜ୍ଞାପନ ଉପରେ ଉମାର ଆଖି ଅଟକିଗଲା। ଚାମେଲୀ ଗଣନାଟ୍ୟ ନୂତନ ହିରୋଇନ୍ ପାଇଁ ୧୮ ବର୍ଷରୁ ୨୫ ବର୍ଷର ସୁନ୍ଦରୀ ଝିଅମାନଙ୍କଠାରୁ ଫଟୋ ଓ ବିବରଣୀ ସହିତ ଦରଖାସ୍ତ ଆହ୍ବାନ କରି ବିଜ୍ଞାପନ ଦେଇଛନ୍ତି।

ଉମା ବିଜ୍ଞାପନଟି ପଢ଼ିବା ପରେ ଉଲ୍ଲସିତ ହେଲା। ଶାଢ଼ି, ଶାୟା, ବ୍ଲାଉଜ ପିନ୍ଧି ମେକ୍ଅପ୍ ନେଲା। ବିଭିନ୍ନ ପୋଜ୍‌ର ତିନୋଟି ଫଟୋ ଉଠାଇ ଦରଖାସ୍ତ ସହିତ ଚାମେଲୀ ଗଣନାଟ୍ୟକୁ ଡାକରେ ପଠାଇଦେଲା। ଦରଖାସ୍ତରେ ଉମାକାନ୍ତ ନ ଲେଖି ଉମାରାଣୀ ଲେଖିଲା। ଦରଖାସ୍ତ ପଠାଇବାର ମାସକ ପରେ ଚାମେଲୀ ଗଣନାଟ୍ୟରୁ ଉମାପାଖକୁ ଚିଠି ଆସିଲା। ଫଟୋରୁ ଚାମେଲୀ ଗଣନାଟ୍ୟ ତାକୁ ହିରୋଇନ୍ କରିବାକୁ ପସନ୍ଦ କରିଛନ୍ତି। କିନ୍ତୁ ଅଭିନୟର ଦକ୍ଷତା ପରଖିବା ପାଇଁ ଇଣ୍ଟରଭିଉ ହେବ।

ଉମା, ଶାଢ଼ି, ଶାୟା, ବ୍ଲାଉଜ ପିନ୍ଧି ଝିଅ ବେଶରେ ଚାମେଲୀ ଗଣନାଟ୍ୟରେ ନିର୍ଦ୍ଦିଷ୍ଟ ଦିନରେ ପହଞ୍ଚିଲା। କିନ୍ତୁ ଚାମେଲୀ ଗଣନାଟ୍ୟର ଅଫିସ୍ ଘରେ ପହଞ୍ଚିବାର ଅଳ୍ପ ସମୟ ଭିତରେ ଚାମେଲୀ ଗଣନାଟ୍ୟର ପ୍ରଯୋଜକଙ୍କ ସହିତ ମୁହାଁମୁହିଁ ସାକ୍ଷାତ ହୋଇଗଲା। ସିଏ ଉମାକୁ ଦେଖୁ ଦେଖୁ ହଠାତ୍ ଚିହ୍ନି ପକାଇ କହିଲେ — କିରେ ଉମା! ତୁ କୁଆଡେ? ଦିନଟାରେ ଏମିତି ଝିଅ ବେଶ ହେଇ ଏଠିକି କାହିଁକି ଆସିଚୁ?

ଉମା ତା କାଗଜପତ୍ର ଦେଖାଇ କହିଲା- ଆପଣଙ୍କ ଦଳରେ ହିରୋଇନ ରୋଲ୍ ପାଇଁ ଆପଣ ବିଜ୍ଞାପନ ଦେଇଥିଲେ। ତାହା ପଢ଼ି ଦରଖାସ୍ତ ସହିତ ଫଟୋ ପଠାଇଥିଲି। ମୋ ଫଟୋ ଦେଖି ଆପଣ ମୋତେ ପସନ୍ଦ କରି ଆଜି ଇଣ୍ଟରଭିଉ ପାଇଁ ଡକେଇଚନ୍ତି।

ଚାମେଲୀ ଗଣନାଟ୍ୟର ପ୍ରଯୋଜକ ହୋ ହୋ ହୋଇ ହସିଲେ। ମୁଁ ହିରୋଇନ୍ ବାଛିବା ପାଇଁ ଯାହା ଉପରେ ଦାୟିତ୍ବ ଦେଇଥିଲି ସେମାନେ ତୋ ପରି ଗୋଟେ ମାଇଚିଆକୁ ଯେ ହିରୋଇନ୍ ରୋଲ୍ ପାଇଁ ବାଛିଲେ ସେ କଥା ଜାଣି ମତେ ଭାରି ହସ ଲାଗୁଛି। ତୁ ବି କୋଉ ସାହସରେ ଦରଖାସ୍ତ କଲୁ? ଆମେ ପରା ଝିଅ ପିଲାଙ୍କ ଫଟୋ ମାଗିଥିଲୁ? ତୁ ଯା ଭିତରେ କେବେଠୁ ଲିଙ୍ଗ ବଦଳାଇ ଝିଅ ହୋଇ ଗଲୁଣି?

ଆନନ୍ଦ ଚନ୍ଦ୍ର ପଣ୍ଡି

ଉମା ପ୍ରଯୋଜକଙ୍କ ହାତ ଧରି ପକାଇ କାକୁତି ମିନତି ହେଲା — ମୁଁ ଆପଣଙ୍କ ପାଖରେ ଶପଥ କରି କହୁଛି ମୁଁ ଆଜିଠୁ ଦିନ ରାତି ସବୁବେଳେ ଝିଅପିଲାଙ୍କ ପରି ଶାଢ଼ି, ବ୍ଲାଉଜ ପିନ୍ଧି ଝିଅଟିଏ ପରି ଚଳିବି। ମୁଁ ପୁଅପିଲା ବୋଲି କେହି ଜାଣିପାରିବେ ନାହିଁ। ଆପଣ ଯାହାଙ୍କୁ ଫଟୋରୁ ହିରୋଇନ୍ ବାଛିବା ଦାୟିତ୍ୱ ଦେଇଥିଲେ ସିଏ ଯେମିତି ମୋ ଫଟୋ ଦେଖି ଝିଅ ବୋଲି ଭାବିଲେ, ସମସ୍ତେ ସେମିତି ଜାଣିବେ ମୁଁ ଝିଅ।

ପ୍ରଯୋଜକ ଆହୁରି ଜୋର୍‌ରେ ହସୁ ହସୁ କହିଲେ — କିରେ ଉମା! ତୁ କାହାକୁ ଏ କଥା କହୁଚୁ? ମୁଁ ତତେ ଯେମିତି ଚିହ୍ନିଲି, ଓଡ଼ିଶା ସାରା ଲୋକେ ତତେ ସେମିତି ଚିହ୍ନିବେ। ତୁ ପରା ଏଇ ଆଠ ଦଶ ବର୍ଷ ଭିତରେ ଓଡ଼ିଶାର ସବୁ ନାମୀ ନାମୀ ମଞ୍ଚରେ ହିରୋଇନ୍ ରୋଲ୍ କରି ଆସିଛୁ। ତତେ କିଏ ନ ଚିହ୍ନିଚି? ଆମେ ଯେତେ ଯାହା କହିଲେ ବି ଲୋକେ ଆମ କଥା ଶୁଣିବେ ନାହିଁ। ତୋତେ ଏ ଯାତ୍ରା ଜଗତରେ ସମସ୍ତେ ଚିହ୍ନନ୍ତି ତୁ ଉମା ମାଇଚିଆ। ଅନ୍ୟମାନେ ତତେ ଚିହ୍ନି ପକାଇବା ପୂର୍ବରୁ ତୁ ଏଠୁ ପଳା।

ଉମା ତା ନିଜ ସପକ୍ଷରେ ଶେଷ ଯୁକ୍ତି ବାଢ଼ିଲା — ଆପଣ ଯାହାକୁ ହିରୋଇନ୍ ବାଛିବା ଦାୟିତ୍ୱ ଦେଇଥିଲେ ସିଏ କେମିତି ମୋତେ ଚିହ୍ନି ପାରିଲେ ନାହିଁ?

— ମୁଁ ଯାହାକୁ ହିରୋଇନ୍ ବାଛିବା ଦାୟିତ୍ୱ ଦେଇଥିଲି ସିଏ ଅପେରା ଲୋକ ନୁହନ୍ତି, ସେମାନେ ସିନେମା ଲୋକ। ସେମାନେ ଆଗରୁ ତୋ ମଞ୍ଚ ଅଭିନୟ ଦେଖି ନାହାଁନ୍ତି। ତତେ ଜାଣି ନାହାଁନ୍ତି। ତୋ ଫଟରୁ ସିଏ ପୁଅ କି ଝିଅ ଚିହ୍ନିପାରିଲେ ନାହିଁ। କେବଳ ସୁନ୍ଦର ହିସାବରେ ତୋ ଫଟୋକୁ ସେମାନେ ବାଛିଚନ୍ତି।

ଉମା ଆଉ କିଛି କହି ପ୍ରଯୋଜକଙ୍କୁ ବୁଝେଇବାକୁ ଚେଷ୍ଟା କରୁଥିଲା, କିନ୍ତୁ ପ୍ରଯୋଜକ ତାର ଆଉ କୌଣସି କଥା ଶୁଣିବା ପାଇଁ ମନା କଲେ। ତାକୁ ଧମକ ଦେଲେ — ତୁ ଭଲରେ ନ ଯିବୁ ଯଦି ପୋଲିସ ଡାକି ତତେ ପୋଲିସ ହାତରେ ଧରେଇ ଦେବି। ଆମେ ଝିଅମାନଙ୍କଠାରୁ ଫଟୋ ଆଉ ଦରଖାସ୍ତ ମଗାଇ ଥିଲୁ, ତୋ ପରି ମାଇଚିଆମାନଙ୍କଠାରୁ ନୁହଁ।

ଉମା ଏଠୁ ବି ବିଫଳ ହୋଇ ଫେରିଲା। ଆଜି ସବୁଆଡୁ ତା ହାତ ଫେରି ଆସୁଛି। ସବୁ ଦ୍ୱାର ତା ପାଇଁ ବନ୍ଦ। ସବୁ ଆଡୁ ନାହିଁ ନାହିଁର ଭୟଙ୍କର ଚିତ୍କାର ତାକୁ କାକୁସ୍ତ କରିଦେଉଛି। ତା ଚାରି କଡ଼ର ପବନ ତାକୁ କହୁଛି — ଅପଦାର୍ଥ, ଅସମର୍ଥ, ଅଚଳ, ଅଦରକାରୀ।

ଆନନ୍ଦ ଚନ୍ଦ୍ର ପତି

ଚାମେଲୀ ଗଣନାଟ୍ୟରୁ ଫେରିବା ପରେ ଉମା ଭିତର ମଣିଷଟା ଏକଦମ୍ ଭାଙ୍ଗି ପଡ଼ିଥିଲା। ବସିଚି ତ ବସିଚି। ଶୋଇଚି ତ ଶୋଇଚି। ମୁଣ୍ଡବାଳ ନୁଖୁରା, ଅକୁଣ୍ଡା।

ଗାଆଁ ଲୋକ ଯିଏ ଯେତେ ବୁଝାଇଲେ ଉମା କାହା କଥା ଶୁଣିଲା ନାହିଁ। କେବଳ ଡ଼ିମା ଡ଼ିମା ଆଖି କାଢି ସମସ୍ତଙ୍କୁ ଚାହିଁଲା, କିଛି କହିଲା ନାହିଁ। ଗାଆଁ କ୍ଳବର ଚାରିଟା ଟୋକା ଉମାର ଅନିଚ୍ଛା ସତ୍ୱେ ତାକୁ ଝିଲିମିଲି ଅପେରାକୁ ନେଇ ଗଲେ। ପ୍ରଯୋଜକଙ୍କୁ ଭେଟିଲେ।

ଉମାର ଅବସ୍ଥା ଦେଖି ପ୍ରଯୋଜକ ଭୟ ପାଇଗଲେ। ଉମା ନିଜକୁ ନିଃଶେଷ କରିଦେବାକୁ ଆରମ୍ଭ କରିଛି। ଏମିତି ଅବସ୍ଥା ଲାଗିରହିଲେ ହୁଏତ ଅଳ୍ପ ଦିନ ଭିତରେ ତାର ମୁଣ୍ଡ ଖରାପ ହୋଇଯିବ।

ଗାଆଁ କ୍ଳବର ଟୋକାମାନେ ପ୍ରଯୋଜକଙ୍କ ଉପରେ ଚାପ ପକାଇଲେ — ଆପଣଙ୍କ ଅପେରାରେ ଉମା ତାର ପିଲାଦିନରୁ କାମ କରିଚି। ଆପଣଙ୍କ ଅପେରାକୁ ଆଜିଯାଏ ତାର ସବୁଠୁ ଶ୍ରେଷ୍ଠ ଅଭିନୟ ଦେଇ ଆପଣଙ୍କ ଅପେରା ପାର୍ଟିର ସୁନାମ ରଖିଚି। ଏଇ ରୋଜାଲୀନମାନେ ଏତେ ଦିନଯାଏ କୁଆଡେ ଥିଲେ ? ଏଇ ଉମାକାନ୍ତମାନେ ତାଙ୍କର ପୌରୁଷକୁ ପାଣିରେ ଉଜେଇଁ ଦେଇ ଝିଅବେଶ ସାଜି ଝିଅର ଅଭିନୟ କରି ଆଜିଯାଏ ଯାତ୍ରାକୁ ବଞ୍ଚାଇ ଆଣିଲେ। ଏଇ ଉମାକାନ୍ତମାନଙ୍କ ସହଯୋଗ ନମିଳିଥିଲେ ଯାତ୍ରାର ଧାରା ଅନେକ ଦିନରୁ ସ୍ଥିର ହୋଇ ଯାଆନ୍ତାଣି। ଯିଏ ନିଜକୁ, ନିଜ ଭବିଷ୍ୟତକୁ ଅପେରା ପାଇଁ ଉତ୍ସର୍ଗ କଲା, ତାକୁ ଆଜି ଆପଣ ଗୋଟେ ଫୁଟା ଫୁଟବଲ ପରି ରାସ୍ତା ଉପରକୁ ଫିଙ୍ଗିଦେବେ! ନିହାତି ଅନ୍ୟାୟ। ଉମା ତାର ଏ ଯାଏ ଯାହା ଶିଖିଚି ସବୁ ଅପେରା ସମ୍ବନ୍ଧୀୟ, ଯାହା କରିଛି ସବୁ ସେଇ ଅପେରା ପାଇଁ। ଭବିଷ୍ୟତ ଦିନମାନଙ୍କରେ ସିଏ ଯାହା କରିବ କେବଳ ସେଇ ଯାତ୍ରା ପାଇଁ। ହିରୋଇନ୍, ଭାବରେ ତାକୁ ରଖିବା ଯଦି ସମ୍ଭବ ନ ହୁଏ ତାହେଲେ ଆପଣ କେଉଁ ଭାବରେ ତାକୁ ରଖିବେ ଆପଣ ଚିନ୍ତା କରି ସ୍ଥିର କରନ୍ତୁ। କିନ୍ତୁ ଆପଣ ରଖନ୍ତୁ। ନାହିଁ କରନ୍ତୁ ନାହିଁ।

କ୍ଳବ ପିଲାଙ୍କ ଚାପ ଯୋଗୁ ପ୍ରଯୋଜକ ଯେତିକି ଚିନ୍ତା ନ କଲେ ଉମାର ଦୟନୀୟ ଅବସ୍ଥା ଦେଖି ତା ପ୍ରତି ସେତିକି ଦରଦ ପ୍ରକାଶ କଲେ। ଅଳ୍ପ କେଇଟା ମାସ ଭିତରେ ଉମାର ଅବସ୍ଥା ଅନେକ ଖରାପ ହୋଇଗଲାଣି। ପ୍ରଯୋଜକ କହିଲେ — ଠିକ୍ ଅଛି, ମୁଁ ରଖିବି। ଉମା ଏଇଠି ଝିଲିମିଲି ଅପେରାରେ ରହିବ। କିନ୍ତୁ ତାକୁ କ'ଣ ଭାବରେ ରଖାଯିବ ମୁଁ ଏତେ ହଠାତ୍ କହିପାରିବି ନାହିଁ। ମୁଁ ସମସ୍ତଙ୍କ ସହିତ ବିଚାର କରି ନିଷ୍ପତ୍ତି ନେବି।

ଆନନ୍ଦ ଚନ୍ଦ୍ର ପତି

ସେଇ ରାତିରେ ପ୍ରଯୋଜକ, ନିର୍ଦ୍ଦେଶକ ଓ ଆଉ ଦୁଇ, ତିନି ଜଣ ପୁରୁଖା ଅଭିନେତା ବସି ଉମାର ଥଇଥାନ ସଂପର୍କରେ ଆଲୋଚନା କଲେ। ଉମା ରିହରସାଲ ରୁମ୍‌ର ଗୋଟିଏ କଣରେ ବସି ରୁଦ୍ଧ ଶ୍ୱାସରେ ତା ଭାଗ୍ୟର ଗଣନାକୁ ଅପେକ୍ଷା କରିଥିଲା। ଉମା ଏଇ ଅପେକ୍ଷା କରିବା ଭିତରେ ଭାବୁଥିଲା ତାକୁ ହୁଏତ କହିବେ ମୁଣ୍ଡରୁ ଝିଅପିଲା ବାଳକାଟି, ନିଶ, ଦାଢି ବଢ଼ାଇ ପୁରୁଷ ଚରିତ୍ରରେ ଅଭିନୟ କରିବାକୁ। ପୁରୁଷ ବେଶ ହେଲେ ତା ମୁହଁଟା କେମିତି ଦିଶିବ? ଏତେ ଦିନ ଝିଅ ଚରିତ୍ରରେ ଅଭିନୟ କରି ସାରିବା ପରେ ସିଏ କ'ଣ ପୁରୁଷ ଭୂମିକାରେ ଅଭିନୟ କରିବାକୁ ସମର୍ଥ ହେବ? ନାରୀ ସୁଲଭ କୋମଳତା ଯାହା ଚରିତ୍ରରେ ଏତେ ଦିନ ଧରି ଆସନ ଜମାଇ ବସିଲାଣି ସିଏ କ'ଣ ପାରିବ ପୁରୁଷ ଚରିତ୍ରର ରୁକ୍ଷ, କଠୋର ସ୍ୱଭାବରେ ଅଭିନୟ କରି ?

ତା ଆଖି ଆଗକୁ ଆଉ ଗୋଟିଏ ସମ୍ଭାବନା ଆସି ଫେରି ଯାଉଥିଲା। ତା ମୁହଁକୁ ଅସୁନ୍ଦର କରି ବୟସ୍କା ସ୍ତ୍ରୀଲୋକର ମେକ୍‌ଅପ୍ ନେଇ ବୁଢ଼ୀ ଭୂମିକାରେ ଅଭିନୟ କରିବାକୁ କହିପାରନ୍ତି। କିନ୍ତୁ ନିଜ ମୁହଁକୁ ଅସୁନ୍ଦର କରି ଆଙ୍କିବାକୁ ତା ହାତ କଣ ସମର୍ଥ ହେବ ?

ସକାଳୁ ପ୍ରଯୋଜକ ଉମାକୁ ଜଣାଇ ଦେଲେ — ମୁଁ ସମସ୍ତଙ୍କ ସହିତ ତୋ ବିଷୟରେ କଥାବାର୍ତ୍ତା କଲି। ତୋ ପାଇଁ କିଛି ହେଲେ କାମ ପାଇଲି ନାହିଁ।

ପ୍ରଯୋଜକ କିଛି ନ କହି ଚୁପ୍ ହୋଇ ବସି ରହିଲେ। ଉମା ତାଙ୍କୁ ମୁହଁ କରି ଠିଆ ହୋଇ ରହିଲା। କିଛି ସମୟର ନୀରବତା ପରେ ପ୍ରଯୋଜକ କହିଲେ — ତୁ ବୋଲହାକ କରିପାରିବୁ? ଜିନିଷପତ୍ର ବୁହାବୁହି କରିବୁ, ଚା, ପାନ, ସିଗାରେଟ୍ ଆଣିବୁ। ରିହରସାଲ ଘର ଓଳାଇବୁ, ହିରୋଇନ୍ ଗାଧେଇବା ପାଇଁ ପାଣି ଆଣି ଦେବୁ।

ଉମା କିଛି ସମୟ ପାଇଁ ସ୍ତବ୍ଧ ହୋଇ ଠିଆ ହୋଇଗଲା। ତା ଦୁଇ କାନରେ ଭୋ ପଶିଗଲା ପରି ତାକୁ ଲାଗିଲା। ମୁଣ୍ଡଟା ଘୂରିଗଲା। ପଡ଼ି ଯାଉ ଯାଉ କାନ୍ଥକୁ ଧରି ଠିଆ ହୋଇଥିବା ସ୍ଥାନରେ ବସି ପଡ଼ିଲା। ସିଏ ଯେମିତି ଗୋଟେ ଅଲଗା ଦୁନିଆ ଭିତରକୁ ପଶି ପଶି ଯାଉଛି ଯେଉଁଠି ତାର କେହି ଚିହ୍ନା ନାହିଁ, କି ଜଣା ନାହିଁ। ତା ଆଗରେ ଅନ୍ଧାର। ତା ଭବିଷ୍ୟତଟା ଅନ୍ଧାର ଭିତରେ ଭୂତପରି ଠିଆ ହୋଇ ତାକୁ ଭୟଭୀତ କରାଉଛି।

ଝିଲିମିଲି ଅପେରାରେ ରହିବା ବ୍ୟତୀତ ତା ପାଇଁ ଆଉ କୌଣସି ବାଟ ଖୋଲା ନାହିଁ। ଉମା ଆଖିରୁ ଲୁହ ପୋଛିଲା। ମନକୁ ଦମ୍ଭ କଲା। ଯେତେବେଳେ

ଯାହା ଆସିବ ତାକୁ ସାମନା କରି ନ ପାରିବା ଲୋକର ଏ ଦୁନିଆରେ ବଞ୍ଚିବାର ଅଧିକାର ନାହିଁ।

ନୂଆ ଜୀବନ ଜୀଇବାର ଆହ୍ୱାନକୁ ଗ୍ରହଣ କରି ଉମା ଉଠିଲା। ନିର୍ବିକାର ଭାବରେ ସବୁକାମ କରିବାକୁ ଆରମ୍ଭ କଲା। ପ୍ରଥମେ ପ୍ରଥମେ ତାକୁ କିଛି କାମ ବତାଇବାକୁ ଅନ୍ୟମାନେ କୁଣ୍ଠା ପ୍ରକାଶ କରୁଥିଲେ। କିନ୍ତୁ ଅଳ୍ପ ଦିନ ଭିତରେ ସମସ୍ତଙ୍କ ମୁଖଲଜ୍ଜା ଛାଡ଼ିଗଲା। ପ୍ରତି କାମ ପାଇଁ ସମସ୍ତେ ଉମାକୁ ଡାକିଲେ। ଉମା ଚା ଆଣ, ଉମା ସିଗାରେଟ୍ ଆଣ। ଉମା ଗଲୁ ଧୋବା ପାଖରେ ପୋଷାକଗୁଡାକ ଆଇରନ୍ କରାଇ ଆଣିବୁ। କିରେ ତତେ କ'ଣ ଦିଶୁ ନାହିଁ? ଘରଟା କେମିତି ମଇଳା କୋତରା ହେଲାଣି ଦେଖିଲୁ? ଛି ଛି ଏଗୁଡା କି ପାନ? ଗୋପାଳ ଜରଦା ଦେଇକି ଆଉ ଦିଖଣ୍ଡ ଆଣିବୁ ଯା।

ହିରୋଇନ୍ ରୋଜାଲୀନ ଡାକ ପକାନ୍ତି—କିରେ ଉମା! ସିଆଡେ କୁଆଡେ ସକାଳ ପହରୁ ଲାଗିଛୁ? ପାଖରେ କୋଉଠି ମୋଚି ଥିବ, ନେ ମୋର ଏଇ ଯୋଡା ହଳକ ମରାମତି କରି ଆଣ।

ଉମା ପେଣ୍ଡୁଟିଏ ପରି ଝିଲିମିଲି ଅପେରାର ପ୍ରତି ସଭ୍ୟଙ୍କ ପଦପ୍ରହାର ଖାଇ ଖାଇ ଅପେରାର ଏ ମୁଣ୍ଡ ସେ ମୁଣ୍ଡ ଗଡ଼ିଲା।

ପ୍ରତି ରାତିରେ ଖିଆପିଆ ସରିବା ପରେ ବିଛଣାରେ ଶୋଇ ଡାକ ପକାନ୍ତି ପ୍ରଯୋଜକ—ଆସିଲୁ ଉମା! ଦେ ଗୋଡ଼, ହାତ, ଅଣ୍ଟା, ପିଠି ଭଲ ଭାବରେ ଘଷି ଦେ।

ଉମା ହାତରୁ ଘଷା ଖାଉ ଖାଉ ଏବେ ପ୍ରଯୋଜକ ନିଦ ଯାଉଛନ୍ତି। ଉମା ଖାଇକି ଶୋଇବା ବେଳକୁ ରାତି ବାରଟା, ସାଢେବାରଟା ହୋଇଯାଏ। ସମସ୍ତେ ଶୋଇ ସାରିଥାନ୍ତି। ଉମା ଶୋଇବା ପାଇଁ ଜାଗା ନଥାଏ। ଅନେକ ଦିନ ସିଏ ପିଣ୍ଡାରେ ଶୁଏ।

ତଅପୋଇକୁ ତା ଭାଉଜମାନେ କଷ୍ଟ ଦେବାପରି ଅପେରାର ସମସ୍ତେ ମିଶି ଉମାକୁ ନିର୍ଯାତିତ କରୁଛନ୍ତି। ତଅପୋଇର ଆଶା ଥିଲା ତା ଭାଇମାନେ ଦିନେ ବିଦେଶରୁ ଫେରିବେ ଆଉ ତାର ଦୁଃଖ, ଦୁର୍ଦ୍ଦଶାର ଅବସାନ ହେବ। ସେଇ ଆଶାରେ ସିଏ ଲୁହ ପିଇ ପିଇ ବଞ୍ଚିଥିଲା କିନ୍ତୁ ଉମାକୁ ଏ ନିର୍ଯାତନାରୁ କିଏ ଉଦ୍ଧାର କରିବ? ସିଏ କାହାକୁ ଆଶା କରି ବଞ୍ଚିବ? ଉମା ତାର ଅତୀତକୁ ରୋମନ୍ଥନ କରି କେତେ ଦିନ ଆଉ ଏ ନିର୍ଯାତନାକୁ ସହିବ।

ତାଠୁ ସାତ ପଛରେ ଝିଲି ମିଲି ଅପେରାରେ ଯୋଗ ଦେଇଥିବା ସାମାନ୍ୟ ସାମାନ୍ୟ ଅଭିନେତାମାନେ ବି ତା ଉପରେ ହାକିମି ଦେଖେଇ ଅନେକ ଫର୍ମାଶି

କରୁଛନ୍ତି । ଖଣ୍ଡା ଗୋଟାଉ ଥିବା ବାର, ଚଉଦ ବର୍ଷର ଲେଣ୍ଡି ଛୁଆ ମଧ ତା ନାଆଁ ଧରି ଡ଼ାକ ଛାଡ଼ୁଛନ୍ତି, ବୋଲହାକ ବତାଉଛନ୍ତି । ତାଙ୍କ ଆଦେଶ ପାଳନ ହେବାରେ ସାମାନ୍ୟ ଡ଼େରିହେଲେ ପାଟିକି ଯାହା ଆସୁଛି ବକି ଯାଉଛନ୍ତି ।

ଏତେ କାମ ଭିତରେ ମଧ ଉମାର ଲୁଗାପଟା ଖୁବ୍ ପରିଷାର ଥାଏ । ମୁଣ୍ଡର ବାଳ ଆଗପରି ଘଞ୍ଚ, ଲମ୍ବା ଆଉ କଳା ମସମସ । ଖୋଲିଦେଲେ ଅଣ୍ଟାତଳ ପର୍ଯ୍ୟନ୍ତ ଆସୁଥିଲା । ପ୍ରତିଦିନ ସଂଜବେଳେ ପୋଷେ ନଡ଼ିଆ ତେଲ ଲଗାଇ ମାଠିମୁଠି ମୁଣ୍ଡ କୁଣ୍ଡାଏ । ସିଏ ହିରୋଇନ୍ ରୋଲ୍ କରିବା ଅନେକ ଦିନରୁ ଛାଡ଼ିଥିଲେ ବି ମୁଣ୍ଡର ବାଳ କେରାକ ଉମାକୁ ପ୍ରତିଦିନ ମନେ ପକାଇ ଦିଏ ସିଏ ଦିନେ ହିରୋଇନ୍ ଥିଲା । ସେଇ କେରାକ ତାର ଅତୀତର ସ୍ମୃତି ।

ଦିନେ ପ୍ରଯୋଜକଙ୍କ ଚା କପ୍‌ରୁ ତିନି, ଚାରି ହାତ ଲମ୍ବର ଗୋଟେ ବାଳ ବାହାରିଲା । ସେଇଟା ଯେ ଉମା ମୁଣ୍ଡର ବାଳ ତାହା ଚିହ୍ନଟ କରିବା ଟିକେ ହେଲେ ବିଳମ୍ବ ହେଲା ନାହିଁ । ପ୍ରଯୋଜକ ବିରକ୍ତ ହେଲେ । ଉମାକୁ ଡାକି କହିଲେ — ଆଉ ମିଛଟାରେ କାହିଁକି ମୁଣ୍ଡରେ ସ୍ତ୍ରୀ ଲୋକ ପରି ବୋଝେ ବାଳ ମୁଣ୍ଡେଇଚୁ ? ନେ, ଦଶଟଙ୍କା ନେ । ଯା ସେଲୁନରେ କାଟି ପୁଅପିଲା ପରି ଛୋଟ ଛୋଟ କରିପକା ।

ଅନ୍ୟମାନେ କହିଲେ — ଏଇ ବାଳ ଯୋଗୁ ତା ହାତରୁ ଚା, ପାନ, କି ପାଣି ଖାଇବାକୁ ଇଚ୍ଛା ହେଉ ନାହିଁ । ଦିନରେ ଦଶଥର ତା ମୁଣ୍ଡବାଳର ଗଣ୍ଠି ଫିଟି ଯାଉଛି, ସିଏ ତାକୁ ଦି ହାତ ଲଗେଇ ତରବରରେ ବାନ୍ଧି ପକାଉଚି । ହାତ ନ ଧୋଇ ବିଭିନ୍ନ କାମ କରୁଚି । ଏଇ ମୁଣ୍ଡର ବାଳ ପାଇଁ ତା କାମର ଗତି ମନ୍ଥର ହୋଇଯାଉଚି ।

ଉମା ଆଖି ଚିପୁଡ଼ି କାନ୍ଦିଲା — ମୋର ସବୁ ଯାଇଚି, କେବଳ ବାଳ କେରାକ ଅଛି । ସେତକ ଗଲେ ମୁଁ ଆଉ କୋଉ ମୁହଁରେ ଏଠି ରହିବି ? ଅପେରାରେ ରହିବା ପାଇଁ ମୋର ଆଉ କି ଯୋଗ୍ୟତା ରହିବ ? ମୋ ବର୍ତ୍ତମାନ ଅତି ଦୟନୀୟ, ଭବିଷ୍ୟତ ଆହୁରି ଅନିଶ୍ଚିତ, ଆହୁରି ଦୟନୀୟ । ବାଳ କେରାକ ମୋର ଅତୀତ । ସେଇ ଅତୀତର ସ୍ମୃତିକୁ ନେଇ ମୁଁ ବଞ୍ଚୁଚି । ସେତକ ମୋଠୁ ଛଡାଇ ନେଲେ ମୁଁ ଆଉ କ'ଣ ପାଇଁ ବଞ୍ଚିବି ? ଏଇ ବାଳ କେରାକ ମୋଠୁ ଅଲଗା କରିଦେଲେ ମୋତେ ମୁଁ ବୋଲି କେହି ଚିହ୍ନି ପାରିବେ ନାହିଁ । ମୁଁ, ମୁଁ ନ ହୋଇ ଆଉ କିଏ ହୋଇଯିବି, ଯାହାକୁ ଅନ୍ୟ କେହି ଚିହ୍ନିବା ଦୂରର କଥା ମୁଁ ବି ଚିହ୍ନି ପାରିବି ନାହିଁ ।

ଆନନ୍ଦ ଚନ୍ଦ୍ର ପତି

ଉମାର ତା ମୁଣ୍ଡବାଳ ପ୍ରତି ଏତେ ମମତା ଆଉ ଭାବପ୍ରବଣତା ଥିବା ଜାଣି ସମସ୍ତେ ଚୁପ୍ ରହିଲେ। ବାଳ କଣ୍ଟ ପ୍ରତି ଆଉ କେହି ଗୁରୁତ୍ୱ ଦେଲେ ନାହିଁ।

ସବୁ ଦୁଃଖ, ନିର୍ଯାତନାକୁ ନିର୍ବିକାର ଭାବେ ପିଇ ଚାଲିଥିବା ଉମାକୁ କଷ୍ଟ ଦେଉଛି ରିହରସାଲ ଆଉ ଶୋ ଚାଲିଥିବା ବେଳେ ତା ଆଖି ଆଗରେ ଆଉ ଜଣେ ତା ଭୂମିକାରେ ଅଭିନୟ କରି ହାତ ତାଳି ନେଉଛି, କିନ୍ତୁ ସିଏ ଦର୍ଶକ ଭାବେ ଚୁପ୍‌ଚାପ୍ ବସିଛି। ଉମା ଜାଣେ ରୋଜାଲୀନ ତା ପରି ଅଭିନୟ କରିପାରୁ ନାହିଁ। ମୁହଁରେ ପ୍ରକୃତ ଭାବ ପ୍ରକାଶିତ ହେଉ ନାହିଁ। ଅଭିନୟ ଜୀବନ୍ତ ନୁହଁ।

ଉମାର ରାଗ ହୁଏ ଦର୍ଶକମାନଙ୍କ ଉପରେ। ସେଇ ଭୂମିକାରେ ଉମା ଯେତେ ସଫଳ ଭାବେ ଅଭିନୟ କରିପାରୁଥିଲା ରୋଜାଲୀନ ତାହା ସେପରି ଭାବେ ଦେଖାଇବାକୁ ଅସମର୍ଥ ହୋଇଥିଲେ ବି ତାଳି, ଉପରେ ତାଳି। ଦର୍ଶକଗୁଡାକୁ ଆମ୍ବଦେଲେ ଖାଇ ଟାକରା ମାରିବେ, ଆମ୍ବଡା ଦେଲେ ବି ଟାକରା ମାରିବେ। ଭୋକ ବେଳେ ଆମ୍ବ, ଆମ୍ବଡ଼ା ଫରକ ଏମାନେ ବାରି ପାରନ୍ତି ନାହିଁ। କିନ୍ତୁ ଆମ୍ବ, ଆମ୍ବ। ଆମ୍ବଡ଼ା, ଆମ୍ବଡ଼ା।

ଝିଲିମିଲି ଅପେରାର ହିରୋ ନଗେନ୍ଦ୍ର ସହିତ ଉମା ପ୍ରାୟ ସାତ ବର୍ଷ ହିରୋଇନ୍ ଭାବେ ରୋଲ କରିଛି। ନଗେନ୍ଦ୍ର-ଉମା ଯୋଡ଼ି ଦର୍ଶକ ମହଲରେ ରୋମାଞ୍ଚ ସୃଷ୍ଟି କରୁଥିଲା। ଏଇ ନଗେନ୍ଦ୍ରର ମଧ୍ୟ ରୁଚି ବୋଲି କିଛି ନାହିଁ। ଅଭିନୟ ଆସୁ ନଥିବା ରୋଜାଲୀନ ସାଙ୍ଗରେ ଅଭିନୟ କରୁଛି। ତାକୁ ପ୍ରଶଂସା କରୁଛି। ତା ସାଙ୍ଗରେ ଫୁସ୍‌ଫୁସ୍ କଥାବାର୍ତ୍ତା କରୁଛି। ତାକୁ ସାଙ୍ଗରେ ଧରି ବଜାର ବୁଲୁଛି। ତା କଥାରେ ଉଠ୍ ବସ୍ ହେଉଛି।

ଅଭିନୟ ବେଳେ ନଗେନ୍ଦ୍ର କୋଳରେ ରୋଜାଲୀନକୁ ଦେଖିଲେ ଉମା ସହି ପାରୁ ନାହିଁ। ଉମା ଛାତି ତଳେ ନଗେନ୍ଦ୍ର ପାଇଁ ଏବେ ବି ଦୁର୍ବଳତାର ସୂକ୍ଷ୍ମ ବୁଢ଼ୀଆଣୀ ବସାଟିଏ ଅଛି। ବୁଢ଼ୀଆଣି ସୂତାର ଛନ୍ଦାଛନ୍ଦି ଜାଲ ଭିତରେ ଉମାର ମନଟା ଛନ୍ଦି ହୋଇ ଛଟପଟ ହୁଏ।

ଅନେକ ରାତି ଯାଏ ବିଛଣାରେ ଗଡ଼ ପଡ଼ ହେବା ପରେ ଉମାର ଆଖିକୁ ନିଦ ଆସୁ ନ ଆସୁଣୁ ତାକୁ ସପନ ଛଡ଼ାଇ ନିଏ। ସପନଟା ତା ପାଇଁ ଜୀବନଠୁ ଆହୁରି ଭୟଙ୍କର। ସପନରେ ରୋଜାଲୀନ ଉମାର ମୁହଁକୁ ଦାନ୍ତରେ କାମୁଡ଼ି କ୍ଷତ ବିକ୍ଷତ କରୁଚି। ତା ତଣ୍ଟି ଚିପି ଧରୁଚି। ଉମା ବିକଳରେ ଚିତ୍କାର କରୁଚି। ତା ନିଦ ଭାଙ୍ଗିଯାଉଚି। ରାତି ଦୁଇଟା, ତିନିଟା ବେଳେ ଉମା ବିଛଣାରେ ଉଠିକି ବସୁଚି। ଥୁଣ୍ଟା ଗଛର କପୋତୀ ପରି କଇଁ କଇଁ ହୋଇ କାନ୍ଦୁଚି।

ଆନନ୍ଦ ଚନ୍ଦ୍ର ପହି

ଉମା ଆଖିରେ ନିଦ ନାହିଁ, ଖାଲି ସପନ। ପ୍ରତି ରାତିର ବିଳମ୍ବିତ ପ୍ରହରରେ ତା ଆଖିକୁ ଓହ୍ଲାଇ ଆସୁଚି ସପନ। ସପନରେ ଉମା ଚିତ୍କାର କରୁଚି, ହସୁଚି, କାନ୍ଦୁଚି। ବଡ଼ ପାଟି କରି କାହାକୁ ଗାଳି ଦେଉଚି। ପୁଣି ଶୋଉଚି, ପୁଣି ସପନ ଦେଖୁଚି।

ଏମିତି ଗୋଟେ ସ୍ୱପ୍ନାଚ୍ଛନ୍ନ ରାତିରେ ଉମା ଉଠି ବସିଲା। ତା ଆଖି ଆଗରେ ଗୋଟେ ନାରୀମୂର୍ତ୍ତି। ଅଭିସାରିକା ଆଗେଇ ଯାଉଚି ଖୁବ୍ ସତର୍କତାର ସହିତ। ଭୂଇଁ ଉପରେ ନିଃଶବ୍ଦ ପଦ ଥାପି ଥାପି, ଚାରିଦିଗକୁ ସତର୍କ ଦୃଷ୍ଟି ପହଁରାଇ ପହଁରାଇ।

ନଗେନ୍ଦ୍ର ବଖରାର କବାଟରେ କଂପିତ ହାତର ଛୁଆଁ। କବାଟ ଭିତରୁ ନିଃଶବ୍ଦରେ ଖୋଲିଲା। ନାରୀ ମୂର୍ତ୍ତିଟିକୁ ନଗେନ୍ଦ୍ର ନିଜ ଛାତି ଆଡ଼କୁ ଆଉଜାଇ ନେବାବେଳକୁ ଅପେରାର ଥୁଣ୍ଟା ତରବାରୀର ଭୂଷାରେ ଦୁହେଁ ଚମକି ଉଠି ଚିତ୍କାର କଲେ। ଝିଲିମିଲି ଅପେରାର ସମସ୍ତ ଅନ୍ତେବାସୀ ନିଦରୁ ଉଠି ଘେରି ଗଲେ। ଆହତ ରୋଢାଲୀନଙ୍କୁ ନଗେନ୍ଦ୍ର ନିଜ ବାହୁବେଷ୍ଟନ ଭିତରେ ଆବଦ୍ଧ କରି ଶାନ୍ତ ଆଉ ପ୍ରକୃତିସ୍ଥ କରାଇଲେ। ତରବାରୀ ତାଙ୍କ ଦେହ ଭେଦ ନକରି ଥିଲେ ବି ରୋଢାଲୀନ ଖୁବ୍ ଭୟ ପାଇ ଯାଇଥିଲେ।

କିଏ ଖଣ୍ଡାଭୂଷି କୁଆଡେ ଚାଲିଗଲା କେହି କିଛି ଜାଣି ପାରିଲେ ନାହିଁ। ଥାନାରେ ଏତେଲା ଦାଏର କରାଗଲା। ପୋଲିସ ଆସି ସମସ୍ତଙ୍କୁ ପଚରା ଉଚରା କଲା। କିନ୍ତୁ ଉମା ନାହିଁ। ଅଭିଶପ୍ତା ଅପ୍ସରା ପରି ଉମା ଅନ୍ତର୍ଦ୍ଧାନ ହୋଇଯାଇଛି।



# ସୁନ୍ଦରୀ

ଯାହାର ଦିହଉଲୁସା କବିତା ବିନ୍ଧିଥିଲା ସୁନ୍ଦରୀର ଲୋମ ଲୋମକେ ନାରାଚ, ମନକୁ ଅଲରା ବଲରା କରି ବାଇ ବିତାଳ କରିଥିଲା, କିଆରୀ କିଆରୀ ସପନର ସୁନାଚମ୍ପାର ମହକରେ ମହ ମହ ମହକାଇଥିଲା ମନଉପବନ, ସେଇ କବିଟିକୁ ବରିଥିଲା ସୁନ୍ଦରୀ ତା ବାପା ମାଆଙ୍କ ଅନିଚ୍ଛାରେ।

ବାପା କହିଲେ ସୁନ୍ଦରୀଲୋ ! କବିଟା ନିଃସ୍ୱ। ନାକରେ କାନରେ ନିମ କାଠି ଖଣ୍ଡେ ଦେବାକୁ ତା ଅଣ୍ଟାରେ ଳୁ ନାହିଁ। ତୋ ପରି ସୁନାନାକୀ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଝିଅ ପାଇଁ ରାଜ କୁମାର ବରି ଆଣିବି ମାଆ। ତୁ ବାପୁଡ଼ା କବିଟାକୁ ତୁଚ୍ଛ କର। ଦଣ୍ଡେ ଧୈର୍ଯ୍ୟ ଧର।

ସୁନ୍ଦରୀ କହିଲା — ନାଇଁ, ନାଇଁ। ମୋର ଲୋଡ଼ା ନାହିଁ ରାଜ କୁମାର। ଲୋଡ଼ାନାହିଁ ଆଉ ଅଳଙ୍କାର, ହୀରା, ନୀଳା, ମୋତି, ମାଣିକ୍ୟ। ମୋର ଲୋଡ଼ା ଗୁଂଜମାଳି, ମୟୂର ପର, କୁରେଇ ଫୁଲ, ବଉଁଚ ଡୋଳି। ସରଗ ଛୁଆଁ ସପନ ତୋଳି ଦେବ ମୋତେ କବି। ମୋ ପାଇଁ ଧନ ଦରବଠୁଁ ସପନ ବଡ଼। ଧନ ଆଜି ଅଛି କାଲିକି ନଥିବ। ଧନ ବଢ଼ିଲେ ବିପଦ ବଢ଼ିବ। ଚୋର ତସ୍କର ଲୁଟିବେ। ଧନ କାୟା ବିସ୍ତାରିବ ଆକାଶ ପାତାଳ। ଧନ ଚିନ୍ତା ଆବୋରି ବସିବ ମନ ଆଉ ଜୀବନ। ସପନ କିନ୍ତୁ ମନକୁ ହାଲୁକା କରି ତୁଳା ପରି ଭିଣି ଦିଏ। ଖେଳେଇ ଦିଏ। ଆଖି ମୁଦିଲେ ଆସେ ନିଦ। ନିଦ ଆସିଲେ ଝୁମୁ ଝୁମୁ ପାଉଁଜି ବଜାଇ ବଜାଇ ଓହ୍ଲେଇ ଆସେ ସପନ। ଖୁସି ଖୁସି ସପନ। ଟୁନି ଟୁନି ସପନ। ମିଠା ମିଠା ସପନ।

ନାଇଁ ନାଇଁ ମୋର ଧନର ସୌଦାଗର ଲୋଡ଼ା ନାହିଁ। ଲୋଡ଼ା ନାହିଁ ମୋର ରାଜକୁମାର। ଲୋଡ଼ା ମୋର କବି। ନିଛକ ନିରୁତା କବିଟିଏ ଲୋଡ଼ା ମୋର।

ଆନନ୍ଦ ଚନ୍ଦ୍ର ପହି

ସୁନ୍ଦରୀର ବୋଉ ଆଉଟିଲେ—ସୁନ୍ଦରୀଲୋ ତୁ ନିଜ ରୂପକୁ ସଜେଇବା ଛଡ଼ା ଏ ସଂସାର ବିଷୟରେ ଜାଣୁ କ'ଣ ? କବି ସାଧାରଣ ମଣିଷ ନୁହେଁ। ସିଏ ଅସାଧାରଣ ଏଇଥିପାଇଁ ଯେ, ସିଏ ଭଲ ମଣିଷର ଅଭିନୟ କଲେ ବି ସିଏ ପାଗଳଟିଏ। ତାର ମନର ପାଦ ଟଳମଳ। ତାର କଥା କାମରେ ଅମେଳ। ଘର ସଂସାର ପାତିବା ପାଇଁ ତା ହାତରେ ବଳ ନାହିଁ। ହସୁଚି ତ ହସୁଚି। ଚାହିଁଚି ତ ଚାହିଁଚି। ଏମିତି ଖିଆଲି ମଣିଷକୁ ନେଇ ତୁ ହୁଏତ ସପନ ଦେଖିବାର ମଜା ଅମଳେଇବୁ; କିନ୍ତୁ କବିକୁ ନେଇ ଘର ସଂସାର ପାତିବାକୁ ଭରସା କୁଳେଇବ ନାଇଁ। ଭରା ନଈରେ ଦଦରା ନାଆରେ ବସେଇ ହଟ ଦେଖିବ କବି। ତୋ ନହନହକା ଲହୁଣି କଅଁଳ ଅଣ୍ଟା କବି ସଂସାର ଭାର ସହିବ ନେଇଁ। ତୁ ଆମ କଥାକୁ ଘେନା କର ସୁନ୍ଦରୀ। ଆମେ ତୋର ଜନମଦାତା। ଆମେ ତୋର ଉନ୍ନତି ଚାହୁଁ। ତୋର ସୁଖ ଶିରୀ ଚାହୁ।

ତୁ କବିକୁ ଛାଡ଼ି ବରଣ କର ଆଉ କୋଉ ସମ୍ଭ୍ରାନ୍ତ ସୁପୁରୁଷ, ରାଜକୁମାର, ସୌଦାଗର। ତୁ ମଙ୍ଗିବୁ ଯଦି ତୋ ବାପାଙ୍କୁ କହି ତୋ ସ୍ୱୟମ୍ବର ଆୟୋଜନ କରିବି। ତୋ ପରି ସୁନ୍ଦରୀ ଝିଅର ନାଆଁ ଶୁଣିଲେ ସାରା ମହୀମଣ୍ଡଳରୁ ଧାଇଁବେ ରାଜକୁମାର। ଥାଟ ପଲଟଣ ଛୁଟିବ ତୋ ସ୍ୱୟମ୍ବରକୁ। ଚହଟ ଚମ୍ପାର ଗଜରା ଗଳାରେ ଲମ୍ବାଇ ତୁ ବାଛିବୁ ତୋ ମନ ପସନ୍ଦର ବର।

ନାଇଁ, ନାଇଁ କହି ଅଡ଼ି ବସିଲା ସୁନ୍ଦରୀ। ଶୋଇଲା ଗମ୍ଭିରୀ ଘରେ, ଯୋଉଠି ପଣପଣ ମୂଷାମାଟି, ଭଣଭଣ ବିଲେଇ ଗୁହ। ଭିତରୁ ମୁଦିଲା କବାଟ କିଳିଣି ଦେଇ। ସକାଳ ଯାଇ ସଂଜ ହେଲା। ସଂଜ ଯାଇ ରାତି ହେଲା। ସୁନ୍ଦରୀ ସେମିତି ଶୋଇଚି ମୁହଁମାଡ଼ି। ସହୀ, ସଙ୍ଗାତୁଣୀ, ଲବଙ୍ଗ, ଅଳେଇଚ, ଗୋଲାପ ଯିଏ ଯେତେ ଡାକିଲେ, କବାଟ ପିଟିଲେ, କାହାରି କଥାକୁ କାନ ଦେଲା ନାଇଁ ସୁନ୍ଦରୀ। ଭିତରୁ ରୁନ୍ଧିଚି ଯାଉଁଳି କବାଟ, ଗବାକ୍ଷ ବାଟ। ସମସ୍ତେ ଡାକି ଡାକି ଫାଟିଫୁଟି ଗଲେ। ସୁନ୍ଦରୀ ଶୁଣିଲାନେଇଁ କି ହୁଙ୍କିଲା ନେଇଁ।

ସୁନ୍ଦରୀର ପେଟରେ କୁହାଟୁଚି ଭୋକ। ମନକୁ ବିବଶ କରୁଚି କବି। ମନକୁ ସହସ୍ର ରନ୍ଧ୍ର କରି ରନ୍ଧ୍ର ରନ୍ଧ୍ରକେ ପଶିଚି କବି। ମନ ଦିହ ପ୍ରାଣ ସବୁ ତନ୍ତ୍ରୀରେ ବସିଚି କବି। କବି ଟାଣୁଚି, ଦୋହଲାଉଚି, ଝୁଙ୍କାଉଚି ସୁନ୍ଦରୀକୁ।

ଅଡ଼ି ବସିଲା ସୁନ୍ଦରୀ। ଜୀବନ ମରଣ ପଣ। କବିକୁ ନ ପାଇଲେ ଜୀବନ ହାରିଦେବ।

ସୁନ୍ଦରୀର ବାପା ବୋଉ ଅଟଳ ମହାମେରୁ। ସେମାନେ ଅଡ଼ି ବସିଲେ—
—କବି ହାତରେ ଝିଅ ସଅଁପିବା ଯାହା ଅଥଳ ଦରିଆରେ ଭସାଇ ଦେବା ସେଇଆ।

ଆନନ୍ଦ ଚନ୍ଦ୍ର ପହି

ନିଶା ଗଡ଼ୁଚି ସାଇଁ ସାଇଁ। ଓଳି ତଳେ କାହାର ଚାପା ଚାପା ପାଦର ଗୁମୁସୁମ୍ ଆବାଜ୍। ସୁନ୍ଦରୀର କାନ ଠିଆ, ଠିଆ, କନ କନ। ନାହି ମୁଣ୍ଡାରୁ ଧୂନ୍ଦାଳି ଉଠିଲା ହାବୁକାଏ ପବନ।

: କିଏ ? କିଏ ସେ ଆସିଚି ଏତେ ରାତିରେ ?

ପାଦ ଶବଦ ଥମି ଗଲା ବିନିଶୁଦ। ହେଲେ ବାସ୍ନାଟେ ଚହଟି ଗଲା ଘର ଭିତରେ। ନେସି ହେଇଗଲା ସୁନ୍ଦରୀର ଦିହରେ। କେମିତି ଚିହ୍ନା ଚିହ୍ନା ଲାଗୁଚି ସେ ମହକ। ମହକଟା ଭିତରକୁ ଭିତରକୁ ପଶି ପଶି ଚାଲିଛି। ଆଚ୍ଛନ୍ନ କରୁଛି ସୁନ୍ଦରୀର ତନୁ, ମନ, ଅନ୍ତର। ସୁନ୍ଦରୀର ଲୋମମୂଳ ଠିଆ ଠିଆ। ଦେହ ମନ ଉଚ୍ଚାଟ, ଉଚକିତ।

ସୁନ୍ଦରୀ କାନ ଡେରିଲା। ଗବାକ୍ଷରେ କାହାର ହାତ ଥାପିବାର ଶବଦ। ସୁନ୍ଦରୀ ଦିହ ଭିତର ଚହଲି ଗଲା, ଚମକି ଗଲା।

ଗବାକ୍ଷ ସେପଟେ କବି, ଏପଟେ ସୁନ୍ଦରୀ। ସୁନ୍ଦରୀର ଛାତିରେ ଛନକା, ମନରେ ଦବକ। ସାହସ କୁଳୋଉ ନାହିଁ ଗବାକ୍ଷର କବାଟ ଖୋଲି କବି ଆଖିରେ ଆଖି ମିଳେଇବାକୁ। ଗୋଟାପଣେ ଥରୁଚି ସୁନ୍ଦରୀ। ଅଙ୍ଗଲତାରେ ତାତିର ତଡ଼ିତ୍।

ଥରିଲା ହାତରେ ଗବାକ୍ଷ ଫେଇଲା ସୁନ୍ଦରୀ। ବାହାରେ ଖିଲି ଖିଲି ହସୁଚି ରାଣୀପୋଷ ପରି ଜହ୍ନ। ଆକାଶ ଭିଡ଼ି ବାଉଳା ତାରା। ଜହ୍ନ ବିଛୁ ହେଇଚି ସୁନ୍ଦରୀର ସାରା ଗାଆଁ ଦାଣ୍ଡ। ଝର୍କାର ରେଲିଂ ଡେଇଁ ସୁନ୍ଦରୀର ଆଖି ଥମିଗଲା କବି ଉପରେ। କୋଣାର୍କ କାନ୍ଥର ଶିଳାମୂର୍ତ୍ତି ପରି ସ୍ଥିର ହୋଇଗଲା ସୁନ୍ଦରୀ।

ଚଡ଼ିତ କଣ୍ଠରେ କବି ଡାକିଲା — ସୁନ୍ଦରି ! ସୁନ୍ଦରି !

ଶାପମୁକ୍ତ ରାଜଜେମା ପରି ସୁନ୍ଦରୀର ଶିଳାମୂର୍ତ୍ତିରେ ପ୍ରାଣ ପଶିଲା। ଲାଜେଇ ଗଲା ସୁନ୍ଦରୀ। ତନୁବଲ୍ଲରୀ ଜଡ଼ସଡ଼। କେଶ ବାସ ବିବଶ।

କବି ଡାକିଲା—ଆ ସୁନ୍ଦରି ! ଚାଲିଆ। ମୁଁ ବରଜିଛି ବାପ, ମାଆ, ଘର, ଦ୍ୱାର, ଧନ, ଦରବ, ଭିଟାମାଟି। ତୁ ମୁରୁଛି ଦେ ସେସବୁ। ଆ ସୁନ୍ଦରି ଘରୁ ଗୋଡ଼ କାଢ଼ି ବାହାରିଆ। ଆମେ ଚାଲିଯିବା, ଅଜଣା ଅଶୁଣା ଥାନକୁ। ସୁନା, ରୁପା, ମଣି, ମାଣିକ୍ୟର ଅଳଙ୍କାର ଖୋଲିପକା ଦିହରୁ। ତୋ ପରି ସୁନ୍ଦରୀ ନାରୀର ଭରା ଦିହକୁ ସେ ସବୁ ବୋଝ। ବାଟଚଲାକୁ ବେଡ଼ି। ତୋର ନିରାଭରଣ କଞ୍ଚା ହଳଦୀ ଦିହ ପାଇଁ ମୋର ମୋହ। ଅଳଙ୍କାର ପାଇଁ ନୁହଁ।

ସୁନ୍ଦରୀ ଦଣ୍ଡେ ଚାହିଁଲା କବିର ଶ୍ୟାମଘନ ଅପଘନକୁ। ନିମିଷେ ଚାହିଁଲା ନିଜ ଦିହକୁ। ହାତରୁ ଖୋଲିଲା ସୁବର୍ଣ୍ଣ ଚୁଡ଼ି, ବାହୁରୁ କୃଷ୍ଣଚୂଡ଼ା, ବେକରୁ ଚନ୍ଦ୍ରହାର, କାନରୁ ମଧୁଝରା, ନାକରୁ ସୁବର୍ଣ୍ଣ ମରିଚ, ମଥାରୁ ଅଳକା, ପାଦରୁ ପାଉଁଜି, ଝୁଣ୍ଟିଆ, ଆଙ୍ଗୁଳିରୁ ହସ୍ତପଦ୍ମ।

ଆନନ୍ଦ ଚନ୍ଦ୍ର ପହି

ଆସ୍ତେ ପାଦ ଥାପିଲା ଏରୁଣ୍ଡି ଆରପଟେ। କବି ହାତରେ ହାତ ଥାପିଲା ସୁନ୍ଦରୀ। ସୁନ୍ଦରୀର ହାତ ମୁଠାରେ ସ୍ୱର୍ଗ। ଓଠରୁ ଝରୁଛି ଚୂନି ଚୂନି ଚମ୍ପା କଢ଼ି। ଆଖି ଭର୍ତ୍ତି ସପନ। ସପନେ, ସପନେ କବି ଆଉ ସୁନ୍ଦରୀ; ସୁନ୍ଦରୀ ଆଉ କବି।

ବିଲୁଆ ଡାକୁଚି। ପେଚା କୁହାଟୁଚି। ରାତି ଗରଜୁଚି। କବି ଦମ୍ଭ ଦେଉଚି-ସୁନ୍ଦରିଲୋ ! ମୁଁ ଅଛି, ଡ଼ର ନାହିଁ, ଭୟ ନାହିଁ।

କବି ହାତରେ ହାତ ଛନ୍ଦି କବି ପ୍ରେମରେ ଜୁବୁଥୁବୁ ସୁନ୍ଦରୀ ଚାଲିଚି ନିଶାର୍ଦ୍ଧରେ। ଆଗରେ ବାଟ ଓଗାଳି ଗହନ ନିଦରେ ଶୋଇଚି ଅଳସୀ ଅଳକା ନଈ। ଅଦୂରରୁ ଶୁଭୁଚି ନାଉରୀ କଣ୍ଠରୁ ରାଗ ରାମକେରୀ।

ନଈ କୂଳେ କୂଳେ ପାଣି ଚବଚବ କରି କବି, ସୁନ୍ଦରୀ ଦୁହେଁ ଚାଲିଲେ ରାମକେରୀକୁ କାନ ଡ଼େରି ଡ଼େରି। ନଈ ହୁଡ଼ାରେ ସ୍ୱର ମେଲିଚି ନାଉରୀ। କୂଳରେ ଦୁଲି ଡଙ୍ଗା।

ନାଉରୀ ମାଗିଲା ଘାଟମୂଲ। କବି ଚାହିଁଲା ସୁନ୍ଦରୀ ମୁହଁକୁ, ସୁନ୍ଦରୀ ଚାହିଁଲା କବି ମୁହଁକୁ। ମନ ଆଉ ଦିହ ପରି ହାତ ଖାଲି। ପଇସା କଉଡ଼ି ଆୟ ଅଳଂକାର କିଛି ନାହିଁ। ଦୁହେଁ ଚାହିଁଲେ ନାଉରୀକୁ କିନ୍ତୁ ନାଉରୀର ସେଥିକୁ ନିଘା ନାହିଁ। ତାକୁ ଘାରିଚି ସୁନ୍ଦରୀର ରୂପ ନିଶା। ତା ଆଖି ଚରୁଚି ସୁନ୍ଦରୀର ଦିହ ବନସ୍ତରେ।

କବି କହିଲା ନାଉରିରେ ! ସୁନ୍ଦରୀ ମୋ ଲାଗି ଛାଡ଼ିଛି ଘରଦ୍ୱାର, ବାପା, ବୋଉ। ମୁଁ ଛାଡ଼ିଚି ଗାଆଁ ଭୂଇଁ। ଅଂଗବାସ ଛଡ଼ା ଆମ ପାଖରେ କିଛି ନାହିଁ। ନାହିଁ, ନାହିଁ, କିଛି ନାହିଁ।

ନାଉରୀ ଦଣ୍ଡେ ନୀରବି ଗଲା। ଚାହିଁଲା ସୁନ୍ଦରୀ ମୁହଁକୁ। ଟିକେ ମୁରୁକି ହସିଲା। ନାଆରେ ଉଠିଲା କାତ ଧରି। କବି ନାଆରେ ଉଠିଲା ସୁନ୍ଦରୀର ହାତ ଧରି। ଭରା ନଈରେ ହାବୁକାଏ ପବନରେ ଦୁଲି ଡ଼ଙ୍ଗା ଚହଲି ଗଲା। ଚହଲି ଗଲା ସୁନ୍ଦରୀର ଭରା ଦିହ।

ଆକାଶକୁ ଅନେଇଲା ସୁନ୍ଦରୀ। ମୁକୁଳା ଜହ୍ନ ହସୁଚି କିରି କିରି। ତଳେ ଅଳକା ନଈ ହସୁଚି ଖିଲିଖିଲି। ନାଆ ପହଁରେ ହଲି, ଦୋହଲି। ନାଉରୀ ଗାଉଚି ରାଗ ରାମକେରୀ। ସୁନ୍ଦରୀକୁ ଚାହୁଁଚି ଚୋରି ଚୋରି, ଚୋରି ଚୋରି।

ସୁନ୍ଦରୀର ଛାତିରେ ଛନକା। ସୁନ୍ଦରୀ କବି କାନରେ କହିଲା ଚୁପି ଚୁପି — କେମିତି ଧାରୁଆ ଲାଗୁଚି ମତେ ନାଉରୀର ଆଖି। ଦୁଷ୍ଟ ହସ। ଦୁଷ୍ଟ ତାର ଠାଣି, ଚାହାଣି। ରୂପବତୀ ରାଜକେମାକୁ ଘରଣୀ କରିବା ଆଶାରେ ନଈର ଗଭୀର ଗଣ୍ଡକୁ ଠେଲିଥିଲା ଏଇ ନାଉରୀ। ପୂନେଇଁ ରାତିରେ ପୂରା ବଅସର ରୂପବତୀ ଦେଖିଲେ ନାଉରୀ ମତୁଆଳ ହୁଏ। ତା ମୁଣ୍ଡ, ଦିହ ଗୋଳମାଳ, ଗୋଳମାଳ ହୁଏ।

ଆନନ୍ଦ ଚନ୍ଦ୍ର ପତି

ସୁନ୍ଦରୀ ଢାବୁଡ଼ି ଧରିଲା କବିକୁ। ଡଙ୍ଗା ଦୋହଲିଲା। ଟବକାଏ ଚନ୍ଦ୍ରମିଶା ପାଣି ଡ଼ଙ୍ଗାକୁ ଡେଇଁଲା।

ନାଉରୀ ଆଙ୍କଟିଲା ସୁନ୍ଦରୀକୁ— ହଲଚଲ ବୁଡେଇବ ଡଙ୍ଗା। ନଈ ଗଣ୍ଡରେ କାହିଁରେ କେତେ ପାଣି। କାତ କେଲୁଆର ପାଉ ନେଇଁ। ମନ ଥିର କର। ମନର ପାଦ ଟଳମଳ ହେଲେ ମୋ ହୁଲି ଡଙ୍ଗା ଦୋହଲିବ। ମନକୁ ଆବୁରୁ ଢାବୁର କଥା ପଶିଲେ ମନ ସାଙ୍ଗରେ ମୋ ଡଙ୍ଗା ଅଥୟ ଧରିବ।

କବିର କଟି ଚାରିପଟେ ବୁଲିଚି ସୁନ୍ଦରୀର କଇଁନାଡ଼ ପରି କଅଁଳ କଂପିତ ହାତ। ଡଙ୍ଗା ଚାଲିଚି ଅଳସୀ ଅଳକା ନଈରେ ସିଆର କାଟି କାଟି।

ନଈ ଆରପଟ ଘାଟରେ ଲାଗିଲା ନାଆ। ସୁନ୍ଦରୀ ପିଣ୍ଡରେ ପଶିଲା ପ୍ରାଣ। ରାତି ସାରା ଦୁହେଁ ଚାଲିଲେ ହାତରେ ହାତ ଛନ୍ଦି। ପାହିଲା ରାତି।

ସକାଳ ସୂର୍ଯ୍ୟର ସୁନା ଆଲୁଅରେ ସୁନ୍ଦରୀର ହାତ ଧରି କବି ପଶିଲା ମାଟିଝାଟିର ନଡ଼ାଛପରଘେରା ନୁଆଁଣିଆ ଝୁପୁଡ଼ିକୁ। ଆଗରେ ଆମ୍ବ ତୋଟା। ପଛରେ କୁରେଇ ଫୁଲର ବୁଦିବୁଦିଆ ଜଂଗଲ। ବାଆଁରେ ବସିଚି କଷି ଧାନ କ୍ଷେତ। ଡାହାଣେ ଶୋଇଚି ସବୁଜ ଘାସ ପଡ଼ିଆ। ଦୂରକୁ ଆଖି ଲମ୍ବେଇଲେ ଦୂର ପାହାଡ଼। ଚଳୁ ମହମହ, ମହକୁଚି ମାଟିବାସ୍ନା। ଝାଟି ଝର୍କା ଦେଇ ଘରକୁ ପଶୁଚି ଦିହ ଉଲୁସା ମନ୍ଦ ମଳୟ ମରୁତ।

କବିର ଚଉଡ଼ା ଛାତିରେ ମୁଣ୍ଡଥାପି ସୁନ୍ଦରୀ ଚାହିଁଲା କବିକୁ, କବି ସୁନ୍ଦରୀକୁ। ଦିହିଙ୍କ ଦିହ ରୋମାଞ୍ଚିତ। ଆଖି ଭରି ସପନ। ମୁଠା ଭର୍ତ୍ତି ସରଗ।

କବିର ଦେହ ଦେଉଳରେ ଦେହ ଡେରି କମନୀୟ ଠାଣିରେ ବସିଚି ସୁନ୍ଦରୀ। ନିରେଖୁଚି ତା କାରିଗରୀ। ବେକରେ ହାତ ଛନ୍ଦି ଓଠରେ ଥାପିଚି ଓଠ। ମାପୁଚି କବି ଦେହର ଉତାପ।

କବି ଦେହରେ ଶିହରଣ, ଶିତ୍‌କାର। ସୁନ୍ଦରୀ ଆଣ୍ଟରେ ବାନ୍ଧିଚି କବିର ଦେହ। ମୁଦା ଆଖିରେ କବି ଦେଖୁଚି ସପନ। ସପନରେ ଓହ୍ଲେଇ ଆସୁଚି ରାଜକୁମାରୀ। କବି ଆଶ୍ଳେଷୁଚି ରାଜକୁମାରୀକୁ। ସୁନ୍ଦରୀ ଦେହରେ ରାଜକୁମାରୀ। କବି ସୁନ୍ଦରୀର କାନରେ ଚୁପି ଚୁପି କହୁଛି— ରାଜକୁମାରି ! ତୁମେ ଅପରୂପା, ଅନୁପମା, ଅନନ୍ୟା।

ସୁନ୍ଦରୀ କବିକୁ ଠେଲି ଦେଇ କହୁଛି— ମୁଁ ରାଜକୁମାରୀ ନୁହଁ, ମୁଁ ସୁନ୍ଦରୀ। ମୁଁ ସୁନ୍ଦରୀ।

କବି ସେମିତି ମୁଦା ଆଖିରେ ଓଦା ଓଦା କଣ୍ଠରେ ପ୍ରଳାପ କରୁଛି— ନା, ତୁମେ ସୁନ୍ଦରୀ ନୁହଁ। ତୁମେ ରାଜକୁମାରୀ। ତୁମେ ରାଜକୁମାରୀ।

ସୁନ୍ଦରୀ କାନ୍ଦୁଚି ଆଖି ଚିପୁଡ଼ି। ଥୋପି ଥୋପି ଲୁହ ବୁନ୍ଦା ପଡୁଚି କବି ଛାତିରେ। ସୁନ୍ଦରୀ ହାତରୁ କବିକୁ ଲୁଟି ନେଇଚି ରାଜକୁମାରୀ।

ଆନନ୍ଦ ଚନ୍ଦ୍ର ପହି

କବି ସୁନ୍ଦରୀ ଭିତରେ ଦେଖୁଚି ରାଜକୁମାରୀଙ୍କୁ। ସୁନ୍ଦରୀ ଜଳୁଚି ଈର୍ଷାରେ। ଘରଦ୍ୱାର, ବାପା, ମାଆ, ଗାଆଁ, ଭୂଇଁ ସବୁ ଛାଡ଼ି ସୁନ୍ଦରୀ ମୁଠେଇ ଥିଲା କବିଙ୍କୁ। କିନ୍ତୁ ଆଚମ୍ବିତ କଥା। ସୁନ୍ଦରୀର ମୁଠା ଭିତରେ କବି ଆଉ ରାଜକୁମାରୀର ମିଥୁନ ମୁଦ୍ରା।

ସୁନ୍ଦରୀର ଦିହେ ଦିହେ ଚରିଯାଉଚି ବିଷ। ସୁନ୍ଦରୀର ବାହୁ ବେଷ୍ଟନୀ ଭିତରେ କବି ହଜିଚି ରାଜକୁମାରୀର ପ୍ରେମରେ। ସୁନ୍ଦରୀ ଓଠରେ ଓଠ ଥାପି କବି ଚୁମୁଚି ରାଜକୁମାରୀର ଅଧର ମଧୁ।

ଦ୍ୱିତୀୟ ଯାମିନୀରେ ସୁନ୍ଦରୀ ତନୁରେ କବି ଭେଟିଛି ଲାବଣ୍ୟବତୀଙ୍କୁ। ତୃତୀୟ ରଜନୀରେ ରତିରସରେ ବୁଡେଇ ରଖିଛି କୋଟିବ୍ରହ୍ମାଣ୍ଡସୁନ୍ଦରୀ। ଚତୁର୍ଥ ରଜନୀରେ ଜଳପରୀ। ପ୍ରତି ରଜନୀରେ ସୁନ୍ଦରୀ ଦିହକୁ ଓହ୍ଲେଇ ଆସନ୍ତି କବି କଳ୍ପନାର ଅନୁପମା ରାଜକୁମାରୀ, ଦେବକନ୍ୟା, ଜଳପରୀ, ଗାନ୍ଧର୍ବୀ, କିନ୍ନରୀ। କିନ୍ତୁ କୌଣସି ଗୋଟିଏ ରଜନୀରେ କବି ଆଶ୍ଳେଷି ନାହିଁ ସୁନ୍ଦରୀକୁ ସୁନ୍ଦରୀ ଭାବରେ ତା ଦେହ ବେଦିରେ।

ପ୍ରତି ଯାମିନୀରେ ସୁନ୍ଦରୀର ଦେହ ବେଦିରେ ଚାଲିଛି ରତିକ୍ରୀଡ଼ା। କିନ୍ତୁ ରାତିଟିଏ ବି ସୁନ୍ଦରୀ କବିକୁ ଭୋଗି ନାହିଁ।

ସୁନ୍ଦରୀକୁ ଧର୍ଷଣ କରି କବି ସମ୍ଭୋଗୁଚି ସପନପରୀ, ରାଜକୁମାରୀ। ପ୍ରତି ରଜନୀରେ ଧର୍ଷିତା ସୁନ୍ଦରୀ ବୁକୁ ଫଟାଇ କାନ୍ଦୁଚି ଚୁପି ଚୁପି। ସୁନ୍ଦରୀର ଆଖି ଭରି ଲୁହ। ଦେହ ଭରି ଦାହ।

ନିଜ ମନର ମଣିଷ, କୋଟି କଳ୍ପନାର କବି ନିଜେ ଧର୍ଷଣ କରୁଚି ସୁନ୍ଦରୀକୁ ତା ଦିହ ଦେଉଳର ଚଉତରାରେ।

ଏମିତି ଦେହ, ମନର ଦହଗଞ୍ଜ କେହି କେବେ ଭୋଗି ନାହିଁ। ଭୋଗିବ ବି ନାହିଁ। ଏମିତି ଧର୍ଷଣର ପଟାନ୍ତର ନାହିଁ। କେବେ କୌଣସି ରମଣୀ ନିଜ ସ୍ୱାମୀ କର୍ତ୍ତୃକ ନିଜ ଦେହ ଚଉତରାରେ ଧର୍ଷିତା ହେବା କେହି କେବେ ଦେଖି ନ ଥିବ, ଶୁଣି ନ ଥିବ। ଏମିତି ଅଭାବନୀୟ ଅଘଟଣ କା'ଆଗେ କହିବ ସୁନ୍ଦରୀ? କିଏ ତା କଥା ପରତେ ଯିବ?

ଯେଉଁ ରାତିକୁ ସୁନ୍ଦରୀ ଉଚ୍ଛାଟିତ, ଉଲ୍ଲସିତ ହୋଇ ରତି ମାଗୁଥିଲା ସେ ରାତିକୁ ଦେଖିଲେ ତା ଛାତିରେ ଛାଟିଏ ଡର। ପ୍ରତି ରାତି ତା ପାଇଁ ରଖିଚି ଧର୍ଷଣ ବେଦନା, ଯାତନା।

ଆନନ୍ଦ ଚନ୍ଦ୍ର ପହି

ରାତି ଆସିଲେ ସୁନ୍ଦରୀର ଯେଉଁ ଦେହମନ ରୋମାଞ୍ଚିତ ହେଉଥିଲା ଏବେ ସେଇ ଦେହର ଲୋମ ଲୋମକେ ପଶୁଚି ଭୟ। ଥର ଥର ଥରୁଚି ତା ଦେହ। ଦେହର ଦାହ ମନକୁ ଜାଳୁଚି ହୁତୁ ହୁତୁ। ଶିଖା ଟେକି ଜଳୁଚି ଅନଳ। ଦିହ, ମୁହଁ ଅନଳ ତାଳରେ ପାଚି ଟହ ଟହ। ନିଆଁ ଧାସରେ ଧସୁଚି ମହୀରୁହ।

ଦିନରେ କବି ହଜୁଚି କଳ୍ପନାରେ, ସପନରେ। କେବେ ଖୋଲା ଆଖିରେ, କେବେ ଅଧା ଖୋଲା ଆଖିରେ ଆଉ କେବେ ମୁଦା ଆଖିରେ କବି ଦେଖୁଚି ସପନ। କବି ଦେହଟା ଏଠିସେଠି ମାଂସ ପିଣ୍ଡୁଳା ପରି ମେଞ୍ଚା ହୋଇ ଉଇହୁଙ୍କା ପରି ପଡ଼ିଚି। ତା ଭିତରେ କବି ନାହିଁ। ଦିହ ଛାଡି କବି ବିଚରୁଚି କାହିଁ କେତେ ଦୂରେ ଗହନ ବନସ୍ତରେ। ପାହାଡ଼ ସେପାରେ, ନଈଧାରେ କେବେ ସାରା ମର୍ତ୍ତ୍ୟରେ, କେବେ ସ୍ୱର୍ଗରେ।

କେବେ ସୁନ୍ଦରୀର ବାହୁବେଷ୍ଟନୀ ଭିତରେ କବି କାଠ ଗଣ୍ଡିପରି ଅସାଡ଼, ଜଡ଼ ପାଲଟିଯାଏ। କବିର ଭେଣ୍ଡା ଦିହ ଭିତରୁ କବି ଓହ୍ଲେଇ ଯାଇଥାଏ ଶିଶୁଟିଏ ହୋଇ ଶିଶୁଙ୍କ ସାଙ୍ଗେ ଧୂଳିଘର ତୋଳିବାକୁ, ସାରୁପତ୍ରରେ ଜଳି ଧରିବାକୁ, ଆଖି କଷା ହେବାଯାଏ ନଈ, ନାଳ, ଗଡ଼ିଆ ପାଣିରେ ବୁଡ଼ିବାକୁ।

ଆଉ କେବେ କବି ତା ଯଉବନ ଛାଡି ଚମ ଧୂଡୁ ଧୂଡୁ ପାଚିଲାବାଳିଆ ପାକୁଆପାଟିଆ ବୁଢାଟିଏ ହୋଇ ମିଶିଯାଏ ବୁଢାବୁଢୀଙ୍କ ମେଳରେ, ଭାବ ଦିଆନିଆ କରି ଅନୁଭବ ସାଉଣ୍ଟିବାକୁ।

କେବେ ଘର ଛାଡ଼ି କବି ଗଲୁଚି ଭୋଗ, ବିଳାସର ଅଳସ ପାଚେରି ଘେରା ମର୍ତ୍ତ୍ୟର ଅଳକାପୁରୀକୁ ଯୋଉଠି ମାଂସ ପଲଉର ମହୋତ୍ସବ ଲାଗିଛି, ଯୋଉଠିକୁ ପ୍ରତି ମୁହୂର୍ତ୍ତରେ ପୁଷ୍ପକ ବିମାନରେ ଲାଗିଛି ରାଜା, ମାହାର୍ଜା, ସାଧବ, କଟୁଆଳମାନଙ୍କ ଭିଡ଼, ଯେଉଠି ପ୍ରତି ରାତିରେ ସୋମରସରେ ରସଗୋଲା ପରି ବୁଡିଥାନ୍ତି ମାହାର୍ଜା, ମହାରାଣୀ, ରାଜଜେମା, ଜେମାଙ୍କ ସହଚରୀ, ମାହାର୍ଜାଙ୍କ ଭାଇ ବିରାଦର।

କବିକୁ ଧରି ପାରୁନି ସୁନ୍ଦରୀ। କବି ପବନ ପରି ଗମୁଚି ଦଶ ଦିଶ। ସେଇନେ ଏଇଠି ଅଛି/ଏଇଠି ନାହିଁ। କବି ପଛେ ପଛେ ନିରାଶିଆ ଦଉଡ଼ ଦଉଡୁଛି ସୁନ୍ଦରୀ। ବେଶ, ବାସ, ବିପର୍ଯ୍ୟସ୍ତ। ପାଦ ପାଦକେ ପ୍ରତିବନ୍ଧକ। ଅସୁମାରି କଣ୍ଟା ଭେଦିଚି ତା ପାଦତଳେ। ଲହୁ ଲୁହାଣ ହୋଇ ଧାଇଁଚି ସୁନ୍ଦରୀ କବି ପଛରେ। ଅଳକାପୁରୀର ପାଚେରି ଡେଇଁ କବି କେତେବେଳେ ପଶୁଚି ଅନ୍ଦରବା ଗରିବ

ଘରେ। ମାଟି ଝାଟିର ଘର, ଚାଳ ଛପର, ଠାଆ ଠାଆ ଚାଳରୁ ଉଡ଼ିଚି ନଡ଼ା, କାନ୍ଥରୁ ଝଡ଼ିଛି ମାଟି। ମାଟି ଚଟାଣ ଛେଲା ଛେଲା ଛାଡ଼ୁଚି। ଖର ନିଃଶ୍ୱାସରେ ପୋଷ, ପୋଷ ଧୂଳି ଉଡ଼ୁଚି। ଚତୁର୍ମାସ୍ୟାରେ ଟପ ଟପ ଥପ ଥପ ଘରସାରା। ଖରାଦିନେ ଘର ସାରା ଟାଇଁ ଟାଇଁ ଖରା। କାନ୍ଥକୁ ଛୁଇଁଲେ ଉହକ ଉହକି ଆସେ ଦେହକୁ। ଜାଡ଼ ଦିନେ କାନ୍ଥ, ଚାଳ ଆଉ ତାଟିର ସହସ୍ର ଫଙ୍କାରେ ଘର ଭିତରକୁ ଧସେଇ ପଶେ ତୁହାକୁ ତୁହା ହେମାଳ। ଚିରା ଅଖା ଆଉ ଚିରା କନ୍ଥା ଭିତରେ ଜାଡ଼ରେ ଚିଉଚିରେଇ ଉଠେ ଦିହ। ଠକ୍ ଠକ୍ ବାଜେ ଦାନ୍ତରେ ଦାନ୍ତ। କୋଲପିଯାଏ ହାତ, ଖିଲି ମାରିଯାଏ ପାଦ, ଦିହ। ଜାଡ଼ରେ ମଡ଼ ମଡ଼ ହୁଏ ମାଂଜ ହାଡ଼।

ଏମିତି ମୁକୁଳା, ଫୁଙ୍ଗୁଳା, ନିଚ୍ଛକ, ନିରୁତା ଅନୁଭବ ସାଉଣ୍ଟିବାରେ ବେଳ, ଅବେଳ ମାନେନା କବି।

ଛପି ଛପି ଚୁପି ଚୁପି ନିଶବଦ ପାଦ ଥାପି ଥାପି ସୁନ୍ଦରୀ ଝାଂପିପଡ଼େ କବି ଉପରେ। କବିର ହାତ ଧରି ଟାଣେ, ଝୁଙ୍କାଏ, କଟାକ୍ଷ କରେ।

କବି କଇଁଛ ପରି ଗାକି ନିଏ ପାଦ। ଛୁଆଁ କି ଛାଇ ବାଜିଲେ କବି ମୁଦି ନିଏ ନିଜକୁ। ଅଷାଢ଼ ଜଡ଼ ପାଲଟି ଯାଏ ପଲକରେ। ସୁନ୍ଦରୀର ଝୁଙ୍କାଝୁଙ୍କିରେ କବି ଥିର ହୋଇ ଥମିଯାଏ।

ବେଦନାବତୁରା କଣ୍ଠରେ କବି କହେ — ସୁନ୍ଦରୀ! କବି ରାଜକୁମାର ନୁହଁ, ନୁହଁ ସୌଦାଗର। କବି ସ୍ରଷ୍ଟା, କବି ଦ୍ରଷ୍ଟା। କବି ଈଶ୍ୱର, କବି ଯାଯାବର।

କବି ପାଇଁ ସଂସାର ବଡ଼ ନୁହଁ, ବଡ଼ ନୁହେଁ ଦେହ। ବଡ଼ ତାର ମନ, ବଡ଼ ତାର ସପନ। ବଡ଼ ତାର ଅନୁଭବ, ଅନୁଭୂତି।

କହ ସୁନ୍ଦରି! ଘର ସଂସାର କି ଦେହ ସୁଖ ବଡ଼ ନା, ବଡ଼ ମୋର ଏଇ ଅନୋଖା ଅନୁଭବ ଯାହାକୁ ମୂଳକରି ମୋ ଭିତରେ ମେଲିବ ଅନେଶ୍ୱତ ଡାଳ। ଡାଳ ହେବ ଆକାଶମୁହାଁ। ଡାଳରୁ ଲମ୍ବିବ ସହସ୍ର ଓହଳ। ଛୁଇଁବ ମାଟିର ମଥା। ଡାଳ ଡାଳକେ ଫୁଟିବ ଅସୁମାରି ଫୁଲ, ଫୁଲ ଫୁଲକେ ମେଲିବ ସହସ୍ର ପାଖୁଡ଼ା।

ସୁନ୍ଦରୀ ଦଣ୍ଡେ ନୀରବି ଯାଏ। କଳେ କବିର ସପନ ସାଗରକୁ, ତୁଳେ କବିର ସୃଷ୍ଟି ସମ୍ଭାରକୁ। ସୁନ୍ଦରୀ ଚାହେ କବିର ମୁହଁକୁ ଯାହା ଆକାଶ ପରି ଅନନ୍ତ, ଅସୀମ, ସାଗର ପରି ଗଭୀର, ଅଥଳ।

ଆନନ୍ଦ ଚନ୍ଦ୍ର ପହି

କବିକୁ ଜାବୁଡ଼ି ଧରି ସୁନ୍ଦରୀ କହେ—ମୁଁ ବରିନି ରାଜକୁମାର, ମୁଁ ବରିନି ସୌଦାଗର। ମୁଁ ବରିଚି କବି। ମୁଁ ବରିଚି ଯାଯାବର। ମୁଁ ବରିଚି ଈଶ୍ୱର। ମୁଁ ନିଜର ସରା ନ ଖୋଜି ସଂପୂର୍ଣ୍ଣ ସମର୍ପି ଦେବି ନିଜକୁ ତୁମଠି। ହଜିଯିବି ତୁମ ସାର୍ଥକ ସୃଷ୍ଟିରେ। ମୁଁ ତୁମଠି ନିଜକୁ ହଜାଇ ବ୍ୟାପକ ହେବି। ବିସ୍ତୃତ ହେବି। ଅସୀମ ହେବି। ଅନନ୍ତ ହେବି। ମୋତେ ତୁମଠି ମିଶାଇ ନିଅ। ହଜାଇ ନିଅ।

ସୁନ୍ଦରୀ ଆଉଜି ଆସିଚି କବିର ଚଉଡ଼ା ଛାତିକୁ। ସୁନ୍ଦରୀର ମୁଦା ଆଖିରେ ଶୋଇଚି ସମର୍ପିତା ସୁନ୍ଦରୀ।

କବି ମୁହଁରେ ସୃଷ୍ଟି ଆଉ ସ୍ୱପ୍ନର ସ୍ୱାକ୍ଷର।



# ଲେଉଟାଣି

ଦୀର୍ଘ ପଇଁଚାଳିଶ ବର୍ଷ ପରେ ନିଜ ଗାଆଁକୁ ଫେରିଚି କେଦାର ସାହୁ। ମୁଣ୍ଡରେ ଜଟା, ମୁହଁରେ ଲମ୍ବା ନିଶ, ଦାଢ଼ି। ସବୁ ପାଚିକି ଧୋଟ। କେଦାର ସାହୁରୁ କେଦାରନାଥ ବାବା ସାଜି ଫେରିଛି ଗାଆଁକୁ। ଗାଆଁ ଛାଡ଼ିବା ବେଳେ ସିଏ ୩୫ ବର୍ଷର ଯୁବକ ଥିଲା। ଫେରିଛି ଅଶି ବର୍ଷର ଦୁର୍ବଳ ବୃଦ୍ଧ ହୋଇ।

ଗାଆଁଯାକର ଲୋକେ କେଦାର ସାହୁକୁ ବେଢିଛନ୍ତି; କିନ୍ତୁ ଗୋଟିଏ ହେଲେ ମୁହଁ [illegible] ଚିହ୍ନା ନୁହଁ। ତାକୁ ବି କେହି ଚିହ୍ନି ପାରୁ ନାହାଁନ୍ତି। ତା ସମୟର ଲୋକ ଜଣେ ହେଲେ ବି ନାହିଁ। ଗାଆଁ ଦାଣ୍ଡର ଧୂଳି, ମାଟି, ଗୋଡ଼ି ସବୁ ତାର ପରିଚିତ; କିନ୍ତୁ ଗାଆଁ ଦାଣ୍ଡରେ ଚଳପ୍ରଚଳ ହେଉଥିବା ମଣିଷମାନଙ୍କ ଘେରରେ ଅଚିହ୍ନା ମଣିଷଟିଏ ହୋଇ ବସିଛି କେଦାର।

ଏଇ ୪୫ ବର୍ଷର ବ୍ୟବଧାନ ତା ଚାରିପାଖରେ ଅନେକ ପରିବର୍ତ୍ତନର ପରିବେଶ ଠିଆ କରିଛି। ସିଏ ଛାଡ଼ି ଯାଇଥିବା ତାର ପାଞ୍ଚ ବର୍ଷର ବଡ ପୁଅ ନରିଆ ଆଜି ୫୦ ବର୍ଷର ପ୍ରୌଢ଼। ତିନିବର୍ଷର ସାନ ପୁଅ ହରିଆ ଯିଏ ଠୁକୁ ଠୁକୁ ଚାଲୁଥିଲା, ଗୁଲୁଗୁଲୁ କଥା କହୁଥିଲା ତାକୁ ଏବେ ୪୮ ବର୍ଷ। ସ୍ତ୍ରୀ କମଳି ଆଉ ନାହିଁ। ଯେଉଁ ଘରେ କମଳି ଥିଲା, ଏବେ ସେ ଘରେ ନରିଆ ଓ ହରିଆର ସ୍ତ୍ରୀ।

ବାରିକ ଡକାଇ କେଦାରର ନିଶ, ଦାଢ଼ି, ବାଳ ଖିଅର କରାଇ ଦେଲା ନରିଆ। କେଦାରନାଥ ବାବା ଭିତରୁ କେଦାର ସାହୁ ଝାଡ଼ିଝୁଡ଼ି ହୋଇ ବାହାରି ଆସିଲା। କିନ୍ତୁ ତାର ପଇଁଚାଳିଶ ବର୍ଷତଳର ଶରୀରରେ ଅନେକ ପରିବର୍ତ୍ତନ। ଗାଲ ପଶି ଯାଇଛି। ଟାକୁଆ ବାହାରି ଯାଇଥିବା ପାଚିଲା ଆମ୍ବର ଚୋପା ପରି ଗାଲଟା ଲୋଚା କୋଚା। ଦେହର ଚମ ଧୂଡୁ ଧୂଡୁ। ଦେହର ନକ୍ସା ସଂପୂର୍ଣ୍ଣ ବଦଳି ଯାଇଛି।

ଆନନ୍ଦ ଚନ୍ଦ୍ର ପହି

ନିଶ, ଦାଢି, କଟା ସରିବା ପରେ କେଦାର ସାହୁକୁ ଚିହ୍ନିବା ପାଇଁ ଆଶା ରଖିଥିବା ଗାଆଁ ଲୋକମାନେ ମଧ୍ୟ ନିରାଶ ହେଲେ। ନରିଆ ଓ ହରିଆଙ୍କ ଚେହେରା ସହିତ ମିଳାଇ କେଦାର ସାହୁକୁ ଚିହ୍ନିବାକୁ କେତେକ ଚେଷ୍ଟା କଲେ। ବାପକୁ ଚିହ୍ନିବା ପାଇଁ ପୁଅର ଚେହେରା ସହିତ ମିଳାଇବା ମଧ୍ୟ ଗୋଟିଏ ବାଟ। ପୁଅକୁ ଦେଖି ବାପାକୁ ଚିହ୍ନିବା ଚିହ୍ନାଚିହ୍ନିର ସବୁଠୁ ଶେଷବାଟ। କେଦାରର ରଙ୍ଗ କଳା କିନ୍ତୁ ପୁଅ ଦୁହିଙ୍କର ରଙ୍ଗ ଗୋରା। ସେମାନେ ମାଆର ରଙ୍ଗ ଆଣିଛନ୍ତି। ତଥାପି ପୁଅ ଦୁହିଙ୍କର ସାମଗ୍ରିକ ଚେହେରାର କିଛି ଅଂଶ କେଦାର ସାହୁ ସହିତ ମିଶିବା କଥାଟା ଗାଆଁର ଉପସ୍ଥିତ ପୁରୁଖା ମଣିଷମାନେ ଜାଣିପାରିବା ପରି ଜଣାପଡ଼ିଲା।

ପୁଅ ଦୁହିଙ୍କୁ ଛାତିରେ ଚାପି ଧରିଲା କେଦାର ସାହୁ। ଦୁଇ ବୋହୂ, ନାତି ନାତୁଣୀ ବୁଢାର ପାଦ ଛୁଇଁ ପ୍ରମାଣ କଲେ। ଏତେ ଦିନ ପରେ ଭରା ସଂସାର ଭିତରକୁ ଲେଉଟାଣି ତା ଦେହ, ମନକୁ ରୋମାଞ୍ଚିତ କଲା। ଦୁଇ ଆଖିରୁ ଖୁସିର ବୁନ୍ଦା ବୁନ୍ଦା ଲୁହ ଖସି ପଡ଼ିଲା। ଲୁହ ଚଳ ଚଳ ଆଖିରେ କେଦାର ଚାହିଁଲା ଗାଆଁ ଲୋକଙ୍କ ମୁହଁକୁ। କାହାରି ମୁହଁ ତାର ପରିଚିତ ନ ହେଲେ ବି ସବୁ ମୁହଁ ତା ନିଜ କାନ୍ଧରୁ ଉଠିଥିବା ପରି ନିଜର ନିଜର ଲାଗୁଛି। ପ୍ରତି ମଣିଷ ଦେହକୁ ତା ନିଜ ଦେହରୁ ରକ୍ତର ଧାର ଲାଗିଚି। ସବୁ ନିଃଶ୍ୱାସରେ ଗୋଟିଏ ବିଶ୍ୱାସ, ଗୋଟିଏ ଅନୁଭୂତିର ପବନ।

କେଦାର ତା ନିଜ ଘର, ବାରି, ଗଛବୃକ୍ଷ ଆଦିକୁ ପଡ଼ିଲା ପଡିଲା ଆଖିରେ ନିରେଖି ଦେଖିଲା। ଘର ଭିତରଟା ତାକୁ ଭୟଙ୍କର ଲାଗିଲା। ଏଇ ଘର ଛାଡ଼ି ଆଜିକୁ ୪୫ ବର୍ଷ ତଳେ ଚାଲିଯାଇଥିବା ମୁହୂର୍ତଟା ତା ଆଗରେ ଠିଆହେଲା। ସ୍ତ୍ରୀ କମଳିର ମୁହଁଖର, ଡ଼ାବଳା ହାତ। କୌଣସି କଥା, କାମରେ, ବ୍ୟବହାରରେ ନିୟନ୍ତ୍ରଣ ନାହିଁ। ପାଟିକୁ ଯାହା ଆସିଲା କହିଲା। ହାତରେ ଯାହା ପଡ଼ିଲା ଖର୍ଚ୍ଚ କଲା। ରୋଷେଇ ଘରେ ଯାହା ଯେତେ ପାଇଲା ରାନ୍ଧିଲା। ଯେତେବେଳେ ଯୁଆଡେ ପାରେ ସିଆଡେ ବୁଲିଲା। କିଛି କାମରେ ଭାଗ ମାପ ନାହିଁ। ଏଇ ନିୟନ୍ତ୍ରଣହୀନ ବ୍ୟବହାର ପାଇଁ କେଦାର କମଳି ସହିତ ପ୍ରତିଦିନ ଝଗଡ଼ା କରେ।

ପରସ୍ପର ଭିତରେ ମାନସିକ ସ୍ତରରେ ଏମିତି ଯେଉଁ ଫରକ ଥିଲା ସେଥିପାଇଁ ଦୁହେଁ ଦଶବର୍ଷକାଳ ଲଢୁଥିଲେ। କେହି କାହା ପାଖରେ ସମର୍ପଣ କରିପାରି ନଥିଲେ। ପ୍ରତି ରାତିରେ କେଦାର ଓ କମଳି ଦୁଇଟି କୁକୁଡ଼ା ପରି ବେକ ଫୁଲାଇ, ଡେଣାପିଟି ଡିଆଁ ଡେଇଁ କରି ଲଢୁଥିଲେ। ପାଟି ତୁଣ୍ଡ କରୁ ଥିଲେ। ପଡ଼ିଶା ଲୋକମାନେ ଉଭୟଙ୍କୁ ଆୟତ୍ତ କରିବା ପର୍ଯ୍ୟନ୍ତ ସେ ଦୁହେଁ ଉତ୍ୟକ୍ତ ହୋଇ ଚିତ୍କାର କରୁଥିଲେ।

ଏମିତି କଳି ଝଗଡ଼ାରେ ବ୍ୟତିବ୍ୟସ୍ତ ହୋଇ କେଦାର ଦିନେ ଘର ଛାଡ଼ିଥିଲା। କେଦାର ଆଖିରୁ କେଇଧାର ଲୁହ ଗାଲ ଦେଇ ଛାତିକୁ ଓହ୍ଲାଇ ଗଲା। ପଛ କଥାରୁ ମୁହଁ ଫେରାଇ କେଦାର ପ୍ରକୃତିସ୍ଥ ହେବାବେଳକୁ ଗାଆଁ ଲୋକଙ୍କ ଭିଡ଼

ଠେଲି ପଶି ଆସିଲା ଅଗଣି ଦାସ। ଭରା ସଂସାର ଭିତରେ ଖଣ୍ଡି ହୋଇ ଅପୂର୍ବ ଉଲ୍ଲାସରେ ରୋମାଞ୍ଚିତ କେଦାର ସାହୁକୁ ଖୁବ୍ ଖୁସିରେ କୁଣ୍ଢାଇ ଧରିଲା ଅଗଣି ଦାସ।

କେଦାର ନାଥ ବାବା ଭିତରୁ କେଦାର ସାହୁକୁ ପ୍ରଥମେ ଆବିଷ୍କାର କରିଥିଲା ଏଇ ଅଗଣି। ଦ୍ୱାରିକା ଧାମରେ କେଦାରନାଥ ମଠର ମୁଖ୍ୟ ବାବାଜି କେଦାରନାଥବାବା ଯେ ମଦନପୁର ଗାଆଁର କେଦାର ସାହୁ, ଏକଥା ଶୁଣିକି ନିଜ କାନକୁ ବିଶ୍ୱାସ କରି ନଥିଲା ସିଏ।

ନିଜର ସମସ୍ତ ପଇସାପତ୍ର, ଲୁଗାପଟା ମଠରୁ ଚୋରିଗଲା ପରେ ମଠର ମୁଖ୍ୟ ବାବାଜୀ କେଦାରନାଥଙ୍କ ପାଖରେ ନିଜର ଦୁଃଖ ଜଣାଇ ଘର ଫେରିବା ପାଇଁ କିଛି ଅର୍ଥ ସାହାଯ୍ୟ ଆଣି ଥିଲା ଅଗଣି ଦାସ। କେଦାର ନାଥ ବାବା ଅଗଣିଠାରୁ ଓଡ଼ିଶାର ଢେଙ୍କାନାଳ ଜିଲ୍ଲାର ମଦନପୁର ଗାଆଁ ନାଆଁ ଶୁଣି ଚମକି ଉଠିଲେ। ପଇଁଚାଳିଶ ବର୍ଷ ତଳେ ସ୍ତ୍ରୀ, ପିଲା ଆଉ ଗାଆଁ ଛାଡି ବାବାଜି ହେବା କଥା ନିଜ ଅଜାଣତରେ ପ୍ରକାଶ କରି ଦେଇଥିଲେ କେଦାରନାଥ।

ଅଗଣି ଦାସଠାରୁ ବାପାଙ୍କର ଠିକଣା ନେଇ ନରିଆ ଫେରାଇ ଆଣିଛି ତା ବାପାକୁ। ମଦନପୁର ଗାଆଁର ସବୁଲୋକ ଠୁଳ ହୋଇ ଏଇ ମିଳନ ଉତ୍ସବକୁ ଉପଭୋଗ କରୁଥିଲେ। ସତେ ଯେପରି ଗାଆଁର ଯାତ୍ରାମଞ୍ଚରେ ଗୋଟିଏ ଅପୂର୍ବ ମିଳନ ଦୃଶ୍ୟର ଅଭିନୟ ଚାଲିଛି।

କେଦାରକୁ ଘେରିଥିବା ଲୋକମାନଙ୍କ ଭିତରୁ ଅନେକ କେଦାରର ସ୍ତ୍ରୀ କମଳି ବିଷୟରେ ଚୁପ୍‌ଚାପ୍ ହେଲେ। କେଦାର ଘର ଛାଡ଼ି ଚାଲିଯିବା ପରେ କମଳି ସବୁଦିନ ପାଟି ବୁଜି ଚୁପ୍ ରହିଲା। ପ୍ରତି ସଂଧ୍ୟାରେ ମନ୍ଦିର ଗଲା। ଦେଉଳ କାନ୍ଥରେ ମୁଣ୍ଡବାଡେଇ ଫୁସ୍ ଫୁସ୍ କରି କ'ଣ କହିଲା। କେଦାର ଥିଲାବେଳେ ଯେଉଁ ଘର କଳି ଝଗଡ଼ା, ପାଟି ତୁଣ୍ଡରେ କମ୍ପୁଥିଲା, ସେ ଘର ସବୁଦିନ ପାଇଁ ଚୁପ୍‌ଚାପ୍ ହୋଇଗଲା। କେତେବେଳେ କେମିତି ନରିଆ ହରିଆଙ୍କ ପାଟି ତୁଣ୍ଡ, ହସ କାନ୍ଦ ବ୍ୟତୀତ ଆଉ କିଛି ଶୁଭିଲା ନାହିଁ। କମଳି ପିଲା ଦୁଇଟିକୁ କିଛି କହେନା, ମାଡ଼, ଗାଳି ଦିଏନା। ତାର ଭୟ ବାପା ପରି ଏମାନେ ତାକୁ ଛାଡ଼ି ଚାଲିଯିବେ।

ଲୁହ, କୋହ, ଦୁଃଖ, କଷ୍ଟ ସବୁକୁ ଛାତିରେ ଚାପି ଚାପି କମଳିର କଲିଜା ପଥରେଇ ଯାଇଥିଲା। କମଳି ସବୁଦିନ ପାଇଁ କଥା କହିବା ଛାଡ଼ି ଦେଇଥିଲା। ଖାଲି ବଡ଼ ବଡ଼ ଆଖି କାଢି ଚାହୁଁଥିଲା। କମଳି କଥା ନ କହିଲେ ବି ତା' କାମ କି ବ୍ୟବହାରରେ କିଛି ଅସଙ୍ଗତି ନ ଥିଲା। ପର ଘରେ କାମ କରି ପିଲାମାନଙ୍କୁ ପୋଷୁଥିଲା।

ଆନନ୍ଦ ଚନ୍ଦ୍ର ପାହି

କମଳିକୁ କଥା କୁହାଇବା ପାଇଁ ଗାଆଁ ଲୋକମାନେ ବହୁ ଉପାୟ କରିଥିଲେ। ଗାଆଁ ଦାଣ୍ଡରେ କମଳିର ଯିବା ଆସିବା ରାସ୍ତାରେ ଧୂଳି ତଳେ କଣ୍ଟା ପୋତୁ ଥିଲେ। କମଳିର ପାଦରେ କଣ୍ଟା ଫୁଟୁଥିଲା। ଏଥିରେ କମଳିର ଆଖିରୁ ଲୁହର ଧାର ଫିଟୁଥିଲା; କିନ୍ତୁ ପାଟି ଫିଟୁ ନଥିଲା।

କମଳିକୁ କଥା କୁହାଇବା ପାଇଁ ଆଉ ଗୋଟିଏ ଅତ୍ୟନ୍ତ ନିଷ୍ଠୁର ପନ୍ଥାର ଆଶ୍ରୟ ନିଆ ଯାଇଥିଲା। କମଳି ଦାଣ୍ଡରେ ଗଲାବେଳେ ତା ମୁହଁକୁ ଫୁଟନ୍ତା ପେଜ ଫିଙ୍ଗା ଯାଇଥିଲା। କମଳିର ମୁହଁଟା ଜଳି ଯାଇ ଅସଂଖ୍ୟ ଫୋଟକା ବାହାରି ପଡିଥିଲା; କିନ୍ତୁ ତାର ପାଟି ଫିଟି ନଥିଲା। ଫୋଟକା ଫାଟି ଘାଆ ହେଲା। ଘାଆ ଭଲ ହୋଇ କମଳିର ମୁହଁଟା ବିଭତ୍ସ ଦିଶିଲା। ତଥାପି କମଳିର ପାଟି ଖୋଲିଲା ନାହିଁ।

ଗାଆଁ ପିଲାମାନେ କମଳିକୁ ପାଗଳୀ ବୋଲି କହି ତା ପଛରେ ଗୋଡ଼ାଇଲେ। ତା ଲୁଗାକାନି ଟାଣିଲେ। ତା'ର ଘରକୁ ଟେକା ପଥର ଫିଙ୍ଗିଲେ। କମଳି କିଛି କହିଲା ନାହିଁ। କିନ୍ତୁ ଦିନକୁ ଦିନ ତାକୁ ଏସବୁ ଅସହ୍ୟ ହେବାରୁ ସିଏ ପ୍ରତିକ୍ରିୟା ପ୍ରକାଶ କଲା। ପିଲାଙ୍କୁ ଆଖି ଦେଖାଇଲା, ଟେକା ପଥର ଫିଙ୍ଗିଲା।

ଦିନେ ଗୋଟିଏ ଅଘଟଣ ଘଟିଲା। ଗାଆଁ ଦାଣ୍ଡରେ ତାକୁ ଚିଡ଼ାଉଥିବା ପିଲାମାନେ ଗୋଡ଼ାଇବା ବେଳେ ଗୋଟିଏ ପିଲା ଭୟଭୀତ ହୋଇ ଧାଇଁ ଯାଉ ଯାଉ ଦାଣ୍ଡ କୂଅରେ ପଡ଼ି ମରିଗଲା। ସେ ପିଲାଟିର ବାପ କମଳିକୁ ନିର୍ଦ୍ଦୟ ପିଟିଲେ ଓ ତା ନାମରେ ଥାନାରେ ଏତେଲା ଦେଲେ।

କମଳି ସାରା ରାତି କାଠ, ପଥର ମୂର୍ତ୍ତିଟିଏ ପରି ବସି ରହିଲା। ସକାଳୁ କମଳିର ଅଖାଡ଼ ଦେହଟା ଘର ଓରାରୁ ତଳକୁ ଓହଳି ଥିଲା।

କମଳି ମରିବାର ପାଞ୍ଚ ସାତ ବର୍ଷ ଯାଏ କମଳିର ଭୂତ ଗାଆଁରେ ଢେର ଉତ୍ପାତ କରୁଥିଲା। କିନ୍ତୁ ଏବେ ଆଉ କିଛି ନାହିଁ, ସବୁ ଚୁପ୍।

ବିଚିତ୍ର ଦେଖାଯାଉଥିବା କେଦାର ସାହୁ ଅଳ୍ପ ଦିନ ଭିତରେ ଗାଆଁର ସାଧାରଣ ଚରିତ୍ରରେ ପରିଣତ ହୋଇଗଲା। ଅଳ୍ପ କିଛି ଦିନର ଆଲୋଚନା ପରେ କେଦାର କି କମଳି ବିଷୟ ଲୋକମାନେ ଭୁଲିଗଲେ।

ପ୍ରଥମେ କିଛି ଦିନ କେଦାର ତା ନାତି, ନାତୁଣୀମାନଙ୍କୁ ସାଙ୍ଗରେ ଧରି ପୋଖରୀ, ଆମ୍ବତୋଟା, ବିଲ, ପାହାଡ଼, ବଣ, ପଡ଼ିଆ ବୁଲି ବୁଲି ପୁରୁଣା ସ୍ମୃତି ସାଉଁଣ୍ଟିଲା। ପ୍ରତି ସ୍ଥାନ ସହିତ ଜଡ଼ିତ ଥିବା ପିଲାଦିନର ଅତି ରୋମାଞ୍ଚକର କାହାଣୀ ସବୁ ନାତି, ନାତୁଣୀଙ୍କୁ କହି ଖୁସି ଖୁସି ସ୍ମୃତି ରୋମନ୍ଥନର ଉଲ୍ଲାସରେ ଉଲ୍ଲସି ଉଠିଲା। ତା ଅନୁପସ୍ଥିତିରେ ଗତ ପଇଁତାଳିଶ ବର୍ଷ ଧରି ଘଟିଥିବା ଘଟଣା, ଦୁର୍ଘଟଣା, ଗାଆଁରୁ ମରି, ହଜି ଯାଇଥିବା ମଣିଷ, ଗାଆଁ ଛାଡି ବାହାରେ ରହୁଥିବା

ମଣିଷ ଓ ବାହାରୁ ଗାଆଁକୁ ଆସିଥିବା ନୂଆ ମଣିଷମାନଙ୍କର ହିସାବ ଗାଆଁ ଲୋକମାନଙ୍କୁ ପଚାରି ବୁଝିଥିଲା।

କେଦାର ନୂଆ ଜୀବନ ପାଇବା ପରି ଉଲ୍ଲସିତ, ପୁଲ୍‌କିତ ଜୀବନ ବଞ୍ଚୁଥିଲା। ଗାଆଁ ମାଟିର ବାସ୍ନା, ଗାଆଁ ପାଣି, ପବନ, ଆକାଶ ତାକୁ ନିଜର କରି ତାର ସ୍ନେହଶୀଳ ପଣନ୍ତରେ ବାନ୍ଧି ପକାଇଲା।

ପ୍ରତ୍ୟେକ ଗାଆଁ ଆଉ ପ୍ରତ୍ୟେକ ଗାଆଁ ଲୋକ ଏକାପରି। କିଛି ନ ଜାଣିଥିବା ଘଟଣା ସଂପର୍କରେ, କୌଣସି ଲୋକର ଅଜଣା ଜୀବନ ସଂପର୍କରେ ନିଜ ନିଜ କଳ୍ପନାର ଗୁଡ଼ି ଆକାଶକୁ ଉଡ଼ାନ୍ତି। ନଟେଇର ସମସ୍ତ ସୂତା ଛାଡ଼ନ୍ତି ଗୁଡ଼ିର ଆକାଶ ଛୁଆଁ ଉଡ଼ାଣ ପାଇଁ। ଗୁଡ଼ିଟା ଆକାଶର ଢେର ଉପରକୁ ଉଠେ। ଗାଆଁର ସବୁଲୋକଙ୍କ ଦୃଷ୍ଟି ଆକର୍ଷଣ କରେ। ଗାଆଁ ଲୋକେ ଗୁଡ଼ି ଦେଖି ବିହ୍ୱଳ ହୁଅନ୍ତି। ଗୁଡ଼ି ବିଷୟର ଆଲୋଚନାରେ ଗାଆଁ ପରିବେଶ ହଇଚଇ ହୁଏ।

ମଦନପୁରର ଗାଆଁ ଲୋକମାନେ ମଧ କେଦାର ସାହୁର ଦ୍ୱାରିକା ଧାମର ସନ୍ନ୍ୟାସ ଜୀବନ ବିଷୟରେ କିଛି ଗୁଜବ ପ୍ରଚାର କରିଥିଲେ। ତା ମଧରେ ଗୋଟିଏ ଆଖିଦୃଶିଆ ଗୁଜବ ଥିଲା। ସେ ଗୁଜବଟି ଏହିପରି — କେଦାର ସାହୁ ଦ୍ୱାରିକାଧାମରେ ଯେଉଁ ମଠରେ ଥିଲା, ସେ ମଠର ଅନେକ ସଂପତ୍ତି। ସୁନାର ଗୌରାଙ୍ଗ ମୂର୍ତ୍ତିର ଓଜନ ତିନି/ଚାରି କିଲୋଗ୍ରାମ। କେଦାର ସାହୁ ମଠ ଛାଡ଼ିବା ଆଗରୁ ଠିକ୍ ସେଇ ଗଢ଼ଣର ଗୋଟିଏ ପିତଳ ଗୌରାଙ୍ଗ ମୂର୍ତ୍ତି ଥୋଇ ଦେଇ ସୁନାର ଗୌରାଙ୍ଗ ମୂର୍ତ୍ତିଟା ନେଇ ଆସିଛି। ସେଇ ମୂର୍ତ୍ତିଟାକୁ ସୁନା ଦାମରେ ବିକ୍ରି କଲେ କୋଟିଏ, ଦିକୋଟି ଟଙ୍କା ହେବ।

ଏଇ କଥାର ସତ୍ୟତା ପ୍ରକାଶ ପାଇଁ ଗାଆଁର ସତିଆ ପଣ୍ଡା ଦିନେ ରାତି ଅଧରେ କେଦାର ସାହୁର ଶୋଇବା ବଖରାରେ ପଶିଥିଲା। ଅନ୍ଧାରରେ ଖୋଜାଖୋଜି କଲାବେଳେ କେଦାର ସାହୁର ଗୋଡ଼ରେ ଚଢ଼ିଗଲା। କେଦାର ସାହୁ ନିଦରୁ ଉଠି ଚୋର ଚୋର ବୋଲି ପାଟି କଲା। ସତିଆ କାନ୍ଥ ଡେଇଁ ଗାଆଁ ଦାଣ୍ଡର ଅନ୍ଧାରରେ ମିଶିଗଲା।

କେଦାର ସାହୁ ଘରେ ସୁନାର ଗୌରାଙ୍ଗ ମୂର୍ତ୍ତି ଥିବାର ପ୍ରମାଣ କି ବେପ୍ରମାଣ ହୋଇ ପାରିଲା ନାହିଁ।

ଗାଆଁକୁ ଫେରିବାର ଗୋଟିଏ ବର୍ଷ ଖୁସିରେ କାଟିଲା କେଦାର। ଏ ବୟସରେ ମଧ ସଂସାରର ଆଶ୍ଳେଷ ଏତେ ନିବିଡ଼, ଏତେ ଅନ୍ତରଙ୍ଗ! ସନ୍ନ୍ୟାସ ଜୀବନ ଓ ସଂସାରୀ ଜୀବନ ଉଭୟକୁ ତଉଲୁଥିଲା କେଦାର। ଉଭୟ ଜୀବନର ସ୍ୱାଦ ଭିନ୍ନ, କିନ୍ତୁ ଉଭୟ ଅନନ୍ୟ।

ଆନନ୍ଦ ଚନ୍ଦ୍ର ପହି

କେବଳ ଗୋଟିଏ କଥା ତା ମନ ତଳେ ଗଗ୍ରଗ୍ ହେଉଥିଲା। ପିଲା ଦୁଇଟାଙ୍କ ଚଳିବା ମୋଟେ ଭଲ ନ ହେଲେ ବି ସେମାନଙ୍କ ବେକ ଉପରେ ବୋଝ ହୋଇ ବସି ରହିଚି ସିଏ। ଦୁଇ ପୁଅଙ୍କର ଏ ଆର୍ଥିକ ଦୁର୍ଗତିଟା ତା ନିଜ ବେଳର। ଦୁଇ ପୁଅ ଉତ୍ତରାଧିକାର ସୂତ୍ରରେ ଏମିତି ଏକ ନିଅଣ୍ଟିଆ ଅବସ୍ଥାର ଅଧିକାରୀ। ପିଲାମାନଙ୍କ ଆହାରରେ ଭାଗ ବସାଇବାକୁ କେଦାରକୁ ଭଲ ଲାଗୁନାହିଁ। କିନ୍ତୁ ସେମାନେ ଯେଉଁ ସ୍ନେହ ଆଦର ଓ ଆନ୍ତରିକତାରେ ତାକୁ ବାନ୍ଧି ରଖିଛନ୍ତି ତାହା କେଦାରକୁ ମୁଗ୍ଧ କରିଛି। ସମସ୍ତେ ମିଶି ଖାଦ୍ୟ ବାଣ୍ଟୁଛନ୍ତି, ଅଭାବ ବାଣ୍ଟୁଛନ୍ତି। ଏଇ ବଣ୍ଟାବଣ୍ଟିରେ ଜୀବନରେ ଅନେକ ସ୍ନେହର ଗଣ୍ଠି ପଡ଼ିଛି। ସେହି ସ୍ନେହ, ସରାଗ, ଆନ୍ତରିକତାର ଗଣ୍ଠିମାଳ ପରିବାରର ସମସ୍ତଙ୍କ ଗଳାରେ ଲମ୍ବିଥିଲା। ଏ ଗଣ୍ଠିମାଳ ସୁନାର କଣ୍ଠିମାଳ ପରି ଚକମକ ଝଲ୍ମଲ୍।

ହଠାତ୍ ଦିନେ କେଦାରର କଫରେ ରକ୍ତ ପଡ଼ିଲା। ଡାକ୍ତର ପରୀକ୍ଷା କରି କହିଲେ ଯକ୍ଷ୍ମା ହୋଇଛି। ପୁଅ, ବୋହୂ ସମସ୍ତେ ଚମକି ଉଠିଲେ। ଯକ୍ଷ୍ମା ରୋଗ ଭୟଙ୍କର ଭାବେ ଢ଼ିଆଁ ରୋଗ। ଘରେ ପିଲା ଛୁଆ। କାହାକୁ କେତେବେଳେ ଏ ରୋଗ ଧରିବ କହି ହେବ ନାହିଁ।

ଡ଼ାକ୍ତର ଔଷଧ ଲେଖିଦେଲେ ଓ ନିୟମିତ ଭଲ ଖାଦ୍ୟର ତାଲିକା ଦେଇ ଆଶ୍ୱାସନା ବାଣୀ ଶୁଣାଇଲେ—କିଛି ଭୟ କରିବାର ନାହିଁ। ଯକ୍ଷ୍ମା ଆଗ ପରି ଆଉ ଭୟଙ୍କର ନୁହଁ। ଚିକିତ୍ସା କଲେ, ଭଲ ଖାଦ୍ୟ ନିୟମିତ ଖାଇବାକୁ ହେଲେ ବୁଢ଼ା ଶୀଘ୍ର ସୁସ୍ଥ ହୋଇଯିବ। ରୋଗୀର କଫକୁ ଏଠି ସେଠି ନ ପକାଇ ଗାତ ଖୋଳି ପୋତି ଦେଲେ ରୋଗ ଡେଇଁବ ନାହିଁ।

ଗାଆଁ ଲୋକଙ୍କ ଭିତରୁ ଗୁଞ୍ଜରଣ ଶୁଭିଲା—ଠାକୁର ମୂର୍ତ୍ତି ଚୋରକୁ ଶାସ୍ତି ମିଳିଛି। ସୁନାର ଗୌରାଙ୍ଗ ମୂର୍ତ୍ତିକୁ ନେଇ ପୁଣି ଦ୍ୱାରିକାଧାମରେ ତା ସ୍ଥାନରେ ଅବସ୍ଥାପିତ ନକଲେ କେଦାର ସାହୁର ବଂଶ ନିପାତ ହେବ।

ଡାକ୍ତର ଫେରିଯିବା ପରେ କେଦାରର ଦୁଇପୁଅ ଓ ଦୁଇ ବୋହୂଙ୍କର ଏକତ୍ର ଗୋଟିଏ ବିଚାର ମଞ୍ଚ ବସିଥିଲା। ଡ଼ାକ୍ତର ଯେଉଁ ଔଷଧ ତାଲିକା ଦେଇଛନ୍ତି ସେ ବାବଦକୁ ଛ ମାସର ଖର୍ଚ୍ଚ ବାରଶହ ଟଙ୍କା। ପ୍ରତିଦିନ ଦୁଧ, ଅଣ୍ଡା ଓ ଫଳ ଖାଇବାକୁ କହିଛନ୍ତି। ସେ ବାବଦକୁ ଦିନକୁ ଅତିକମରେ ସାତ ଟଙ୍କା। ଏତେ ଖର୍ଚ୍ଚ ପାଇଁ ପଇସା ଯୋଗାଡ଼ କରିବା ନିହାତି ଅସମ୍ଭବ। ଛୋଟ ପିଲାମାନଙ୍କୁ ବୁଢ଼ାଙ୍କଠାରୁ ଅଲଗା ରଖିବା ମଧ ବଡ଼ କଷ୍ଟକର। ବୁଢ଼ା ତ ଏଠି ସେଠି କଫ ପକାଇବେ; ତାଙ୍କୁ କେମିତି ବା ଜଗି ହେବ?

ଆନନ୍ଦ ଚନ୍ଦ୍ର ପହି

ସାନ ପୁଅ ହରିଆ କହିଲା—ଗାଆଁ ଲୋକମାନେ କୁହାକୁହି ହେଉଛନ୍ତି, ବୁଢ଼ା କୁଆଡେ ସୁନାର ଗୌରାଙ୍ଗ ମୂର୍ତ୍ତି ଆଣିଛି। ସେଇ ମୂର୍ତ୍ତିଟା ବିକ୍ରି କଲେ ବୁଢାର ଚିକିତ୍ସା କରି ହୁଅନ୍ତା। ଆମର ବି ଅଭାବ ଘୁଞ୍ଚନ୍ତା। ବାପା ସେ ମୂର୍ତ୍ତିଟା ତ ଘରକୁ ଆଣି ନାହାଁନ୍ତି। ଯଦି ବାଟରେ କେଉଁଠି ଲୁଚାଇ ରଖିଥିବେ ସେକଥା ଭାଇ ନିଶ୍ଚୟ ଜାଣିଥିବେ।

ନରିଆ ଆଶ୍ଚର୍ଯ୍ୟ ହୋଇ ସାନ ଭାଇ ହରିଆର ମୁହଁକୁ ଚାହିଁଲା। ତା ମୁହଁର ମୁଦ୍ରାରୁ ପଢ଼ି ହେଉଥିଲା ଯେ ନରିଆ ସୁନାର ଗୌରାଙ୍ଗ ମୂର୍ତ୍ତି ବିଷୟରେ କିଛି ହେଲେ ଜାଣେ ନାହିଁ।

ହରିଆ ହଠାତ୍ ରାଗିଯାଇ କହିଲା—ସୁନାମୂର୍ତ୍ତି କଥା ତ ଜାଣିନା ଆଉ ତା ହେଲେ କାହିଁକି ଗାଡ଼ି, ମଟର ପଇସା ଖର୍ଚ୍ଚ କରି ଦ୍ୱାରିକାଧାମରୁ ଗୋଟେ ବୁଢ଼ା ବାବାଜିକୁ ଧରି ଆଣି ତାକୁ ଖିଅରବାର କରି ବାପା କରିକି ବସେଇ ଦେଲ? ଛୋଟ ପିଲାମାନଙ୍କର ବାପା ଦରକାର ନା ଆମ ପରି ପଚାଶ ବର୍ଷିଆ ବୁଢାମାନଙ୍କର ବାପା ଦରକାର? ଗୋଟେ ବୁଢା ବାବାଜୀକୁ ବାପା ଆସନରେ ବସାଇ ତାକୁ ପୋଷିବା, ପାଳିବା ଦେହପାର ହେପାଜତ ନେବାରେ କ'ଣ ଯେ ବାହାଦୂରୀ ମୁଁ ବୁଝି ପାରୁନାହିଁ। ତମେ ତମର ଆଣିଚ ତ ତମେ ବୁଝ।

ନରିଆ ହରିଆର ଏମିତି ବ୍ୟବହାରରେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ କହିଲା — କ'ଣ କହିଲୁ? ଇଏ ଆମ ବାପା ନୁହଁ? ମୁଁ ଗୋଟେ ବାବାଜୀ ଧରି ଆଣିଚି?

ହରିଆ ଟିକେ ନରମି ଯାଇ କହିଲା, ସତ କଥା କହିଲେ ତ ତମେ ରାଗିବ। ତାଙ୍କୁ ତ ଆମ ଗାଆଁର କେହି ଚିହ୍ନି ପାରୁ ନାହାଁନ୍ତି। ତମେ ତାଙ୍କୁ କେମିତି ଚିହ୍ନଚ କହିଲ?

ଚିହ୍ନିବା ନ ଚିହ୍ନିବାର କ'ଣ ଅଛି? ସିଏ ତ ପଛ କଥା ନିଜେ ସବୁ ଅଗଣି ଆଗରେ କହିଗଲେ। ଆମ ଗାଆଁ ଲୋକଙ୍କ କଥା କହିଲେ, ୪୫ ବର୍ଷ ହେଲା ଗାଆଁ ଛାଡି ଯାଇଥିବା କଥା କହିଲେ। ସିଏ ଆମ ବାପା ନୁହଁ ବୋଲି ସିନା ତୁ ଏବେ କହୁଛୁ, ସେ ଦିନ କ'ଣ କହୁଥିଲୁ? ଆମ ଗାଆଁ ଲୋକ ସମସ୍ତେ ଦେଖିଲେ କେହି କ'ଣ ମନା କଲେ?

: ତାଙ୍କ ସମୟର ଲୋକ କିଏ ଆମ ଗାଆଁରେ ଏଯାଏ ବଞ୍ଚିଚି ଯେ ତାଙ୍କୁ ଚିହ୍ନିବ? ତୁମେ ଯେତେବେଳେ ନିଜର ବାପା ବୋଲି ଆଣି ଘରେ ବସାଇଲ କିଏ କାହିଁକି ସେଥିରେ ମୁହଁ ଫିଟେଇବ?

ସନ୍ଦେହର ମୁଠା ମୁଠା ମଞ୍ଜି ହରିଆ ବିଞ୍ଚି ଚାଲିଲା ନରିଆର ଚତୁର୍ଦ୍ଦିଗରେ — ତୀର୍ଥ ସ୍ଥାନକୁ ଆମ ଦେଶର ପ୍ରତି ଗାଆଁରୁ ଲୋକ ଯାଆନ୍ତି। ଆଗରୁ କିଏ ଆମ ଅଞ୍ଚଳର ଲୋକ ଦ୍ୱାରିକା ଯାଇ ବାବାଜୀ ଆଗରେ ଆମ ବାପାଙ୍କ ଗାଆଁ ଛାଡ଼ିବା

କଥା କହିଥିବ। ସେଇ ଲୋକର କଥାକୁ ମୂଳ କରି ଏ ବାବାଜୀ ହୁଏତ ବାପା ସାଜି ଏଠି ଆରାମ କରୁଚି। ଅତି ବୁଢା ଅବସ୍ଥାରେ ବାବାଜି ମଠରେ ପଡ଼ି ହୀନସ୍ତା ହୋଇଥାନ୍ତା। ଏଇନେ ଏଠି ପୁଅ, ବୋହୂ, ନାତି ନାତୁଣୀଙ୍କ ସେବା ପାଉଛି।

ବୁଢ଼ାକୁ ନେଇ ଉଠିଥିବା ଝଡ଼ଟା ସେଦିନ ଅନେକ ରାତି ପର୍ଯ୍ୟନ୍ତ ସେ ଘରକୁ ଦୋହଲାଇଥିଲା। ସମସ୍ତେ କଥାଟାକୁ ଯଥା ସମ୍ଭବ ଲୁଚେଇ ଲୁଚେଇ ଆଲୋଚନା କରିଥିଲେ ବି କଥାର କେତେଟା ଭଗ୍ନାଂଶ ବୁଢାର କାନରେ ପଡିଥିଲା।

ସକାଳ ହେଲା। ପ୍ରଥମେ ନରିଆର ସାନ ପୁଅ ପରେଶ ଦେଖିଲା ଜେଜେବାପା ଘରେ ନାହାଁନ୍ତି। ଖାଦ୍ୟ ଅକ୍ଷତ ଅବସ୍ଥାରେ ଥୁଆ ହୋଇଛି। ବୁଢା ସେଥିରେ ଖୁମ୍ପା ମାରିନାହିଁ।

ନରିଆ, ହରିଆ ବୁଢ଼ାକୁ ଅନେକ ଖୋଜିଲେ। ବୁଢାର ସନ୍ଧାନ ମିଳିଲା ନାହିଁ। ସେମାନେ ଜାଣିପାରିଲେ ଯେ ବୁଢ଼ା କାନରେ ସବୁକଥା ବାଜିଛି। ସିଏ ଘର ଛାଡ଼ି ଚାଲିଯାଇଛି।

କାହାକୁ କିଛି ନ ଜଣାଇ ସେମାନେ ସନ୍ଦେହ କଲେ, ହୁଏତ ଏ ବୁଢା ତାଙ୍କର ବାପା ନୁହଁ। ତାଙ୍କ ବାପା ହୋଇଥିଲେ ସବୁ ଦହଗଞ୍ଜ, ଲାଞ୍ଛନା, ଭର୍ତ୍ସନା ସହି ଏଇ ଗାଆଁରେ ପଡ଼ି ରହିଥାଆନ୍ତା, ଯେମିତି ଆମ ଗାଆଁର ଅନ୍ୟ ଅନେକ ବୁଢ଼ା, ଗଂଜଣା ସହି ପଡ଼ି ରହିଛନ୍ତି। ଏ ସବୁ ଦୁଃଖ, ଗଂଜଣା ସଂସାରୀ ମଣିଷର ଦେହର ମଳି।

ବୁଢା ଘର ଛାଡିବାର ତିନି ଦିନ ପରେ କମଗଡ଼ ଥାନାରୁ ଜଣେ କନେଷ୍ଟବଲ୍ ନରିଆ ସାହୁର ଘର ଖୋଜି ଖୋଜି ମଦନପୁରରେ ପହଞ୍ଚିଲା। ପୋଲିସ୍‌କୁ ଦେଖି ନରିଆ ଛାତିରେ ଦବକ ପଶିଲା। ହରିଆ ଡ଼ରି ଯାଇ ଗାଆଁ ଆମ୍ବତୋଟାରେ ଲୁଚିଲା।

ପୋଲିସ ସାଙ୍ଗରେ ନରିଆ କମ୍‌ଗଡ଼ ଥାନାକୁ ଗଲା। ଗାଆଁ ଲୋକ ଅନେକ କଥା କୁହା କୁହି ହେଲେ। କିଏ କହିଲା—ବୁଢ଼ାଟାକୁ ପୁଅମାନେ ହଇରାଣ ହରକତ କଲେ। ବୁଢା ଯାଇ ପୁଅଙ୍କ ନାଆଁରେ ଥାନାରେ କେଶ୍ କରିଛି।

ଆଉ କିଏ କହିଲା—ନାଇଁ, ନାଇଁ ସେ କଥା ମିଛ। ଅସଲ କଥା ହେଉଛି ଦ୍ୱାରିକା ଧାମରୁ ସୁନାର ଗୌରାଙ୍ଗ ଚୋରି କେଶ୍‌ରେ ପୋଲିସ୍‌ବାଲା ବୁଢାକୁ ଆଗରୁ ଥାନା ହାଜତରେ ରଖିଛନ୍ତି। ଏବେ ନରିଆକୁ ନେଲେ। ହରିଆ ଲୁଚିଚି। ତାକୁ କୋଉ ଛାଡ଼ିବେ ? ତାକୁ ଏଇ ଦିନେ ଦିଦିନ ଭିତରେ ନିଶ୍ଚେ ନେବେ।

ଆନନ୍ଦ ଚନ୍ଦ୍ର ପହି

ଆଉ ଜଣେ ସମସ୍ତଙ୍କ କଥାକୁ କାଟି କହିଲା — ବୁଢାଟା ଭୟଙ୍କର ଡକାୟତ। ବେଶ ବଦଳାଇବାରେ ଓସ୍ତାଦ୍। କିଛି ଦିନ ପରମବୈଷ୍ଣବ ସାଜି ଦ୍ୱାରିକାଧାମରେ ବାବାଜୀ ଭାବରେ କଟାଇଲା। ସେଠି କୁଆଡେ ପୋଲିସ ତା ପିଛା କରିବାରୁ ଏଠି ଦାଢି, ନିଶ, ବାଳ ଖିଅର ହେଇ ଗୃହୀ ସାଜିଥିଲା। ହେଲେ ନିଆଁକୁ କେତେ ଦିନ ଘୋଡେଇ ହବ? ସିଏ ନିଶ୍ଚୟ ପଦାକୁ ଫୁଟି ବାହାରିବ। ଜେଲ୍‌ରେ ତାର ଫଟ ଥିଲା? ଫଟ ମିଳେଇକି ବୁଢାକୁ ପୋଲିସି ବାନ୍ଧିଚି। ମାଡ଼ ବେଳେ ବୁଢା ନରିଆ ନାଆଁ ବୋଧେ କହିଚି। ସେଥିପାଇଁ ନରିଆ ଥାନାକୁ ଟଣା ହୋଇ ଯାଇଚି।

ନରିଆ ଥାନାରେ ପହଞ୍ଚି ଦେଖିଲା ଗୋଟିଏ ଶବ ଥୁଆ ହୋଇଛି। ଶବ ଉପରେ ଧଳା ଚାଦର। ଧଳା ଚାଦରଟା ଉଠାଇ ନିଆଗଲା। ନରିଆ ଆଗରେ ମୃତ କେଦାର ସାହୁର ଶବ।

ଶବ ଚିହ୍ନଟ କରିବାକୁ ନରିଆକୁ ଥାନାବାବୁ ନିର୍ଦ୍ଦେଶ ଦେଲେ। ଶବଟା ଫୁଲି ଯାଇଥିଲେ ବି ଚିହ୍ନିବାରେ କିଛି ଅସୁବିଧା ନଥିଲା। କିନ୍ତୁ ଶବଟାକୁ ନିଜ ବାପାର ଶବ ବୋଲି କହିବାକୁ ନରିଆ ସାହସ କଲା ନାହିଁ। ବୁଢା ଘର ଛାଡିବା ଦିନଠୁ ତା ବିଶ୍ୱାସ ଦୋହଲି, ଟହଲି ଯାଇଛି। ନରିଆର ମନରେ ସନ୍ଦେହର କୁହୁଡି ଉଠି ତା' ମନକୁ କୁହୁଡ଼ିଆ କରିଦେଇଛି। ହରିଆ ଓ ତାର ସ୍ତ୍ରୀ ରୋକ୍‌ଠୋକ୍ କହୁଛି — ଇଏ ଗୋଟେ ବାବାଜି। ଏ ଲୋକ ହୁଏତ ଆତ୍ମହତ୍ୟା କରିଛି। ଥାନାବାଲା ନାନା ହଇରାଣ ହରକତ୍ କରିବେ। ତାଛଡ଼ା ଶବ ସଂସ୍କାର ଆଉ ଶୁଦ୍ଧି ପାଇଁ ଟଙ୍କା ପଇସା କେଉଁଠୁ ଆସିବ?

ଥାନାବାବୁ ଚିତ୍କାର କଲେ — କ'ଣ ନରିସାହୁ! ଏଟା କାହା ଶବ ଚିହ୍ନିପାରୁନା? ନିଅ, ଏ ଚିଠିଟା ପଢ଼। ଏ ତୁଳସୀ ମାଳିଟା ନିଅ। ଚିଠି ଉପରେ ଏଇ ତୁଳସୀ ମାଳିଟା ଥୁଆ ହୋଇଥିଲା।

ନରିଆ ଥର ଥର ହାତରେ ଚିଠିଟା ଖୋଲିଲା।

ଚିଠିରେ ଲେଖାଥିଲା — ମୁଁ କେଦାରନାଥ ସାହୁ। ପିତା ରଙ୍ଗାଧର ସାହୁ, ଗ୍ରାମ-ମଦନପୁର, ଥାନା-କମଗଡ଼, ଜିଲ୍ଲା-ଢେଙ୍କାନାଳ। ମୋର ବର୍ତ୍ତମାନ ବୟସ ଅଶି। ମୋର ସେବା ଯତ୍ନ କରିବାକୁ ପଡ଼ିବ ବୋଲି ମୋର ଦୁଇ ପୁଅ ନରହରି ଓ ହରେକୃଷ୍ଣ ଆଉ ଦୁଇ ବୋହୂ ମୁଁ ସେମାନଙ୍କର ବାପା ନୁହେଁ ବୋଲି ସନ୍ଦେହ ପ୍ରକାଶ କଲେ। ସେମାନେ ମୋର ସେବା ଯତ୍ନ ନ କରିଥିଲେ ଯେତିକି ବାଧି ନଥାନ୍ତା ତାଠୁ ବେଶି କଷ୍ଟ ହେଲା ମତେ ବାପା ବୋଲି ଅସ୍ୱୀକାର କରିବା।

ଆନନ୍ଦ ଚନ୍ଦ୍ର ପତି

ମୁଁ କିନ୍ତୁ ମୋ ବେକର ପବିତ୍ର ତୁଳସୀମାଳ ଛୁଇଁ ଶପଥ କରି କହୁଛି—ମୁଁ କେଦାରନାଥ ସାହୁ, ପିତା ରଙ୍ଗାଧର ସାହୁ, ଗ୍ରାମ-ମଦନପୁର, ଥାନା-କମଗଡ଼, ଜିଲ୍ଲା-ଢେଙ୍କାନାଳ। ମୁଁ କେଦାରନାଥ ସାହୁ, ମୁଁ କେଦାରନାଥ ସାହୁ।

ମୁଁ ନରହରି ସାହୁ ଓ ହରେକୃଷ୍ଣ ସାହୁଙ୍କ ବାପା। ନରହରି ସାହୁ ଓ ହରେକୃଷ୍ଣ ସାହୁ ମୋର ନିଜ ପୁଅ। ନରହରି ସାହୁ ଓ ହରେକୃଷ୍ଣ ସାହୁ ମୋର ନିଜ ପୁଅ।

ମୁଁ କେଦାରନାଥ ସାହୁ, ମୁଁ କେଦାର ନାଥ ସାହୁ, ମୁଁ କେଦାରନାଥ ସାହୁ।



# କୁବୁଜା

ପ୍ରିନ୍ସିପାଲ୍‌ଙ୍କ ରୁମ୍ ଆଗରେ ରମାଦେବୀ ମହିଳାକଲେଜର ପିଲାମାନେ ରୁଣ୍ଡ ହୋଇ ଚିତ୍କାର କରୁଛନ୍ତି। ରୁମ୍ ଭିତରେ ଗୁପ୍‌ଚୁପ୍‌ବାଲା କୁବୁଜାର ବିଚାର ଚାଲିଛି।

ଏତେ ଦିନ ଧରି କଲେଜ ଝିଅମାନଙ୍କୁ ଗୁପ୍‌ଚୁପ୍‌ରେ ବ୍ରାଉନ୍‌ସୁଗାର ଦେଇ ଏତେଗୁଡ଼େ ଜୀବନକୁ ନଷ୍ଟ କରିବାକୁ ଉଦ୍ୟମ କରିଥିବା ଲୋକର ବିଚାର ଏମିତି ଏକ ରୁଦ୍ଧ କୋଠରୀରେ କାହିଁକି ଚାଲିଛି? ଆମ ସମସ୍ତଙ୍କ ଆଗରେ ଏଇ ମୁକ୍ତ ପ୍ରାଙ୍ଗଣରେ କରାଯାଉ। ତାକୁ ପୋଲିସ୍‌ରେ ଦିଆଯାଉ।

କଲେଜ ୟୁନିୟନ୍‌ର ପ୍ରେସିଡେଣ୍ଟ ପ୍ରୀତି ମିଶ୍ର ଗୋଟିଏ କାଇନେଟିକ୍ ହୋଣ୍ଡା ଉପରେ ଠିଆ ହୋଇ ଭାଷଣ ଆରମ୍ଭ କରିଦେଲା — ଏ କୁବୁଜା ବ୍ରାଉନ୍‌ସୁଗାର ପରି ମାରାତ୍ମକ ନିଶା ସେବନ କରାଇ ଏତେଗୁଡ଼େ ମେଧାବୀ ଜୀବନକୁ ଧ୍ୱଂସ କରିବାକୁ ଅପଚେଷ୍ଟା ଚଳାଇ ଥିଲା। ଆମ କଲେଜ ୟୁନିଅନ ତରଫରୁ ତା ବିରୋଧରେ କ୍ଷତି ପୂରଣ କେଶ୍ ଦାଏର୍ କରାଯିବ।

ଏ କଥାକୁ ସମର୍ଥନ ଜଣାଇ ଉପସ୍ଥିତ ସମସ୍ତ ଝିଅ ତାଳି ମାରିଲେ। ହଠାତ୍ ପ୍ରିନ୍ସିପାଲଙ୍କ କୋଠରୀର କବାଟ ଖୋଲିଲା। ପ୍ରିନ୍ସିପାଲ ବାହାରକୁ ଆସି ଘୋଷଣା କଲେ — ତୁମେ ସବୁ ନିଜ ନିଜର କ୍ଲାସକୁ ଯାଅ। କୁବୁଜାର ଗୁପ୍‌ଚୁପ୍‌ରେ କିଛି ମିଶିଛି କି ନ ମିଶିଛି ତାହା ପରୀକ୍ଷା ପାଇଁ ମୁଁ ଲାବୋରେଟୋରୀକୁ ପଠାଇବାର ବ୍ୟବସ୍ଥା କରିଛି। ଏ ପରୀକ୍ଷାର ରିପୋର୍ଟ ଦୁଇ ଦିନ ଭିତରେ ମିଳିଯିବ। ସେ ପର୍ଯ୍ୟନ୍ତ କୁବୁଜା ଏ କଲେଜ ଆଗରେ ଗୁପ୍‌ଚୁପ୍ ବିକ୍ରି କରିପାରିବ ନାହିଁ।

ପ୍ରୀତି ମିଶ୍ର ସେମିତି କାଇନେଟିକ୍ ହୋଣ୍ଡା ଉପରେ ଠିଆ ହୋଇ ପ୍ରିନ୍ସିପାଲଙ୍କୁ ଚାଲେଞ୍ଜ କଲାପରି ପଚାରିଲା — ଆମେ କିନ୍ତୁ ଜାଣିବାକୁ ଚାହୁଁ ଯଦି ଗୁପ୍‌ଚୁପ୍‌ରେ ପ୍ରକୃତରେ ବ୍ରାଉନ୍‌ସୁଗାର କିମ୍ବା ସେମିତି କିଛି ମାରାତ୍ମକ ନିଶାଦ୍ରବ୍ୟ ମିଶିଥିବାର

ଆନନ୍ଦ ଚନ୍ଦ୍ର ପହି

ପ୍ରମାଣ ମିଳେ, ତାହେଲେ କୁବୁଜାଠାରୁ କ୍ଷତିପୂରଣ ଆଦାୟ କରାଯିବ କି ନାହିଁ? ଯଦି କ୍ଷତିପୂରଣ ଆଦାୟ କରାଯିବ ତାହେଲେ ତାର ପରିମାଣ କେତେ?

ପିଲାମାନେ ପ୍ରୀତି ମିଶ୍ରକୁ ସମର୍ଥନ ଜଣାଇ ପାଟି କଲେ — ହଁ ହଁ, କ୍ଷତିପୂରଣ କଥା ସ୍ପଷ୍ଟ ହୋଇ ଯାଉ। ଏତେ ମେଧାବୀ ପିଲାଙ୍କ ଜୀବନ ମାଟି ଗୋଡ଼ି ନୁହେଁ। ଆମମାନଙ୍କ ଜୀବନକୁ ନେଇ ଖେଳିବାର ଅଧିକାର କାହାର ନାହିଁ।

ପ୍ରିନ୍ସିପାଲ ସମସ୍ତଙ୍କୁ ବୁଝାଇଲେ — ଟେଷ୍ଟ ରିପୋର୍ଟ ମିଳିବା ପୂର୍ବରୁ କ୍ଷତିପୂରଣ କଥା ଉଠାଇବା ଅବାନ୍ତର। ତୁମେ ସବୁ ଏକଥା ମୋ ଉପରେ ଛାଡ଼ିଦିଅ। ସାମାନ୍ୟ କଥାକୁ ଅଯଥାରେ ଜଟିଳ କରିବାକୁ ଉଦ୍ୟମ କରନା।

ପିଲାମାନଙ୍କୁ ଅଫିସ ଆଗରୁ ସଫା କରିବା ପରେ କୁବୁଜାକୁ ଛାଡ଼ି ଦିଆ ଗଲା। କୁବୁଜା ଚାରି ପାଖରେ ପିଲାମାନେ ଘେରିଯାଇ ବିଭିନ୍ନ ପ୍ରଶ୍ନ ପଚାରିଲେ। ବିଭିନ୍ନ ପ୍ରଶ୍ନରେ ବିବ୍ରତ କୁବୁଜା କିଛି ନ କହି ଚୁପ୍‌ଚାପ୍ ଚାଲିଗଲା। କୁବୁଜାର ଅସୁନ୍ଦର ମୁହଁଟା ଅପମାନ, ଗ୍ଲାନି ଆଉ କ୍ରୋଧରେ ଅତ୍ୟନ୍ତ ଭୟଙ୍କର ଦିଶୁଥିଲା।

କୁବୁଜା ପିଠିରେ ମସ୍ତବଡ଼ କୁଜ। କେବଳ କୁଜ ନୁହେଁ ତା ଶରୀରରେ ଆହୁରି ଅନେକ ଅସୁନ୍ଦର ଚିହ୍ନ ଅଛି। ତା ମୁହଁସାରା ଗାଡ଼ ଗାଡ଼ ବସନ୍ତ ଚିହ୍ନ। ବାଆଁ ଗାଲ ଉପରେ ଗୋଟେ କଉଡ଼ି ଆକାରର କଳା ଭାତୁଡ଼ି। ତା ଉପରେ ଚଅଁର ପରି ତିନି ଚାରିଟା କଳା ରୁମ। କାନ ଦୁଇଟା ହାତୀକାନ ପରି ବଡ଼ ବଡ଼। ଉପର ମାଢ଼ିର ଛାମୁଦାନ୍ତ ଦୁଇଟା ହାତୀଦାନ୍ତ ପରି ଆଗକୁ ମୁହାଁଇଛି। ଦେହର ରଙ୍ଗ ଅଙ୍ଗାର ପରି କଳା।

ଏଇ ଘଟଣା ବା ଦୁର୍ଘଟଣାର ପରଦିନ ଛାତ୍ରୀମାନଙ୍କ କମନ୍ ରୁମ୍‌ରେ କୁବୁଜା ଉପରେ ଆଲୋଚନା ପଡ଼ିଲା। ପ୍ରୀତି ମିଶ୍ର ଆଲୋଚନା ଆରମ୍ଭ କରି କହିଲା — କୁବୁଜା ପରି ଅନେକ ଲାଭଖୋର ଆମ ଦେଶରେ ଅଛନ୍ତି। ସେମାନଙ୍କୁ ଚିହ୍ନଟ କରି ଧାଡ଼ି କରି ଠିଆ କରାଇ ଗୁଳି ମାରିଦେବା କଥା।

ଶ୍ରାବଣୀ କହିଲା — ଏମିତି ଗୋଟେ ଅତ୍ୟନ୍ତ ଭୟଙ୍କର ଘଟଣା ଅନେକ ବର୍ଷ ତଳେ କଲିକତା ମହାନଗରୀରେ ଘଟିଥିଲା। ମୁଁ ସେକଥା ମୋ ଜେଜେବାପାଙ୍କଠାରୁ ଶୁଣିଥିଲି। କଲିକତାର କ'ଣ ଗୋଟେ ବଡ଼ ହୋଟେଲ ତା' ନାଁ ମୋର ମନେ ପଡୁ ନାହିଁ। ସେ ହୋଟେଲର ମାଂସ ତର୍କାରି ଅତି ଚମତ୍କାର ଥିଲା। ସେ ମାଂସ ତର୍କାରିର ସ୍ୱାଦ ସାରା ଭାରତର କୌଣସି ହୋଟେଲରେ ମିଳୁ ନଥିଲା। ଭାରତର ବିଭିନ୍ନ ପ୍ରଦେଶରୁ ଏପରିକି ଇଂଲଣ୍ଡ, ଆମେରିକା, ଫ୍ରାନ୍ସ ଆଦି ବିଦେଶରୁ ଲୋକମାନେ ସେଇ ମାଂସ ତର୍କାରୀ ଖାଇବାକୁ ଆସୁଥିଲେ। ଖୁବ୍ ଅଳ୍ପ ଦିନ ଭିତରେ ସାରା ପୃଥିବୀରେ ସେ ହୋଟେଲ୍ ପୃଥିବୀ ବିଖ୍ୟାତ ହୋଇଗଲା।

କମନ୍‌ରୁମ୍‌ରେ ଥିବା ସମସ୍ତ ଝିଅଙ୍କ ଆଖି ବିସ୍ମୟରେ ବିସ୍ଫାରିତ ହୋଇଗଲା ।

ଶ୍ରାବଣୀ କହି ଚାଲିଲା — ସେଇ ହୋଟେଲ ପାଖରେ ଥିବା ଜଣେ ବୈଜ୍ଞାନିକ ଗୋଟିଏ ଦୂରବୀକ୍ଷଣ ଯନ୍ତ୍ର କିଣି ପରୀକ୍ଷା କରୁଥିଲେ । ସେଇ ହୋଟେଲର ଅଷ୍ଟମ ମହଲାରେ ଥିବା ଗୋଟିଏ ବନ୍ଦ କୋଠରୀର ଝରକା ଫାଙ୍କରେ ସେ ବୈଜ୍ଞାନିକ ଦେଖିଲେ ଗୋଟିଏ ଅଦ୍ଭୁତ ଦୃଶ୍ୟ । ଗୋଟିଏ ମଣିଷକୁ ମାରି ତାର ଛାଲ ଉତରା ଯାଉଥିଲା । ବୈଜ୍ଞାନିକ ତତ୍‌କ୍ଷଣାତ୍ ପୋଲିସକୁ ଫୋନ୍ କଲେ । ନରହତ୍ୟା ଓ ନରମାଂସ ବିକ୍ରୟ ଅପରାଧରେ ସେ ହୋଟେଲ ମାଲିକ ଆରେଷ୍ଟ ହେଲେ । ବିଚାର ପରେ ତାକୁ ଫାଶି ଦଣ୍ଡ ଦିଆଗଲା ।

ଶତାବ୍ଦୀ କହିଲା — ଏମିତି ଲାଭଖୋର ନୃଶଂସ ଲୋକକୁ ଫାଶି ଦେବାଟା ଠିକ୍ ହେଲା ନାହିଁ । ପ୍ରତି ଦିନ ତା ଦେହରୁ କିଛି କିଛି ମାଂସ କାଟି କୁକୁରଙ୍କୁ ଖାଇବାକୁ ଦେଇଥିଲେ, ସିଏ କଲବଲ୍ ହୋଇ ମରିଥାନ୍ତା । ତାକୁ ଉଚିତ ଶିକ୍ଷା ମିଳିଥାନ୍ତା ।

ପ୍ରଜ୍ଞା କହିଲା — ଏ କୁବୁଜା ଗୁପ୍‌ଚୁପ୍‌ବାଲା ଯଦି ବ୍ରାଉନ୍‌ସୁଗାର ମିଶାଉଥିବାର ପ୍ରମାଣିତ ହୁଏ, ତାହେଲେ ତାକୁ ଏଇ କଲେଜ ଆଗରେ ଠିଆ କରି ଚାରିକଡୁ ପଥର ମାରି ମାରି ତାର କୁତ୍ସିତ ମୁହଁଟାକୁ ଛେଚରା କରିଦେବା ।

ହେମାଙ୍ଗୀ କହିଲା — ନା, ଆଇନକୁ ଆମେ ନିଜ ହାତକୁ ନେବା ଉଚିତ ନୁହଁ । ତାକୁ ପୋଲିସ୍‌କୁ ହ୍ୟାଣ୍ଡଓଭର କରି ଦେବାଟା ଠିକ୍ ହେବ ।

ଦୁଇଦିନ ପର୍ଯ୍ୟନ୍ତ କୁବୁଜା ଆଲୋଚନାରେ କଲେଜ ପରିସର ସରଗରମ ରହିଲା । ତୃତୀୟ ଦିନ ଲାବୋରେଟୋରୀରୁ ଟେଷ୍ଟ ରିପୋର୍ଟ ଆସିଲା । ରିପୋର୍ଟ କୁବୁଜାକୁ ନିର୍ଦ୍ଦୋଷ ପ୍ରମାଣିତ କଲା । ଗୁପ୍‌ଚୁପ୍‌ରେ କିଛି ଆପତ୍ତିଜନକ ଜିନିଷ ମିଶି ନାହିଁ । ପୂର୍ବ ପରି କଲେଜ ଆଗରେ ଗୁପ୍‌ଚୁପ୍ ବିକ୍ରି କରିବା ପାଇଁ କୁବୁଜା ଅନୁମତି ପାଇଲା ।

କୁବୁଜା ଓ ତାର ଗୁପ୍‌ଚୁପ୍‌କୁ କେନ୍ଦ୍ର କରି ଉଠିଥିବା ଝଡ଼ର ଅବସାନ ହେଲା । କିନ୍ତୁ କୁବୁଜା ସାରା କଲେଜରେ ବିଖ୍ୟାତ ହୋଇଗଲା । ତାର ଗୁପ୍‌ଚୁପ୍ ବିକ୍ରି ବଢ଼ିଲା । ଅନ୍ୟ ଗୁପ୍‌ଚୁପ୍ ଦୋକାନୀ ଆଉ ଚାଟ୍ ଦୋକାନୀମାନଙ୍କର ବିକ୍ରି କମିଗଲା ।

କିଛି ଦିନ ପରେ କୁବୁଜା ଗୁପ୍‌ଚୁପ୍ ପାଖରେ ଲାଇନ୍ ଲାଗିଲା । କୁବୁଜାର ଷ୍ଟାଟସ୍‌ରେ ଅନେକ ପରିବର୍ତ୍ତନ ହେଲା । ଆଗେ ମଇଳା ଗେଞ୍ଜି ଖଣ୍ଡେ ପିନ୍ଧି ଆସୁଥିଲା । ଏବେ ସୁନ୍ଦର ଟେରିକଟ୍ ସାର୍ଟ ଆଉ ଟେରିକଟ୍ ପ୍ୟାଣ୍ଟ ପିନ୍ଧି ଆସିଲା । ତା ଗୁପ୍‌ଚୁପ୍ ଗାଡ଼ିର ଚେହେରା ମଧ୍ୟ ବଦଳି ଯାଇଛି ।

ଆନନ୍ଦ ଚନ୍ଦ୍ର ପତି

ଜଣେ କିଏ କୁବୁଜାକୁ କମେଣ୍ଟ କଲା — କୁବୁଜା ବିରୋଧରେ ଯେଉଁମାନେ ପ୍ରିନ୍ସିପାଲଙ୍କ ପାଖରେ ଅଭିଯୋଗ କଲେ ସେମାନେ କୁବୁଜାର ଲୋକ। ବିଖ୍ୟାତ ହେବା ପାଇଁ ଏଏ ଗୋଟେ ନୂଆ ପନ୍ଥା।

କୁବୁଜା ଏ କଥାର ପ୍ରତିବାଦ କଲା — ଅଭିଯୋଗ କରିଥିବା ଲୋକମାନେ ମୋ ଲୋକ ନୁହଁନ୍ତି; ଏଇ କଲେଜ ଆଗରେ ଗୁପଚୁପ୍ ଆଉ ଚାର୍ଟ ବିକ୍ରି କରୁଥିବା ଅନ୍ୟ ଦୋକାନୀମାନେ। ମୁଁ ଜାଣେ ସେମାନେ ମୋ ବେପାର ଦେଖି ସହି ପାରିଲେ ନାହିଁ। ମତେ ଏଠୁ ବିଦା କରିଦେଇ ସେମାନେ ବେପାର କରିଥାନ୍ତେ। କିନ୍ତୁ ମୁଁ ସତ୍‌ରେ ଅଛି। ମୋର କିଛି ହେଲା ନାହିଁ। କ୍ଷତି ହେଲା ସେଇମାନଙ୍କର। ତାଙ୍କ ଦୋକାନରେ ମାଛି ଉଡୁଛି। କେହି ଯାଉ ନାହାଁନ୍ତି। ଏମିତି ପର ନାଆଁରେ ମିଛ, ଖଚ୍ କହିଲେ ବେପାର ହୁଏ ନାହିଁ। ଭଲ ଜିନିଷ ଦରକାର। ଭଲ ଜିନିଷ ହେଲେ ଭଲ ବେପାର ହେବ।

କୁବୁଜା ଏକଥା କହିବା ବେଳେ ତାଠାରୁ ଅଳ୍ପ ଦୂରରେ ଥିବା ଅନ୍ୟ ଚାର୍ଟ ଆଉ ଗୁପଚୁପ୍ ଦୋକାନୀମାନଙ୍କୁ ଜଣେଇ ଜଣେଇ ଚାହୁଁଥିଲା। ମନେ ମନେ ଖୁସି ହେଉଥିଲା ଯେ ସେମାନେ ତାଙ୍କ କୁକର୍ମର ଫଳ ଭୋଗୁଛନ୍ତି।

ଦିନେ ହେମାଙ୍ଗୀ କୁବୁଜାକୁ ଶୁଣେଇ ଶୁଣେଇ କହିଲା — ଇଏ ହେଲା ଶ୍ୱେତଲୀନା। ଆମ କଲେଜ କୁଇନ। ଇଏ ତୁମ ଗୁପଚୁପ୍‌କୁ ଭାରି ଭଲ ପାଏ। ଦିନେ ଗୁପଚୁପ୍ ନ ଖାଇଲେ ଯାର ବରଫ ପରି ଧଳା ମୁହଁଟା ଶୁଖି ଅଙ୍ଗାର ପାଲଟି ଯିବ। ହୁସିଆର ଆମ କଲେଜ କୁଇନ୍‌ଙ୍କ ମୁହଁ ଯେମିତି କୌଣସି ଦିନ ଅଙ୍ଗାର ନ ହୁଏ।

ଶ୍ୱେତା ହେମାଙ୍ଗୀ ପିଠିରେ ଗୋଟେ ବିଧା ଖୁବ୍ ଜୋରରେ ଥୋଇଦେଇ ଥିଲା। କୁବୁଜା ଅଜାଣତରେ ଦୁଇଟା ଅଧିକା ଗୁପଚୁପ୍ ଶ୍ୱେତାକୁ ଦେଇଥିଲା। ହେମାଙ୍ଗୀ ପୁଣି ଥରେ ଥଟ୍ଟା କଲା — ଆମ କଲେଜଯାକ ଝିଅ ତୁମଠୁ ଗୁପଚୁପ୍ ଖାଉଛୁ। ତମର ଢେର ଲାଭ ହେଉଥିବ। ଆମ କଲେଜ କୁଇନ୍‌କୁ ଦୁଇଟା ଗୁପଚୁପ୍ ଅଧିକା ଦେଲେ ତମର କିଛି କ୍ଷତି ହେବ ନାହିଁ। କଲେଜ କୁଇନ୍ ହିସାବରେ ସେଇଟା ତାର ପ୍ରାପ୍ୟ। ଠିକ୍ ଅଛି, ଆଜିଠୁ ପ୍ରତିଦିନ ଅଧିକ ଦୁଇଟା ଗୁପଚୁପ୍ ତମେ ଶ୍ୱେତାକୁ ଦେବ।

ଶ୍ୱେତା ରାଗିଯାଇ ହେମାଙ୍ଗୀର କାନମୋଡ଼ି ତାକୁ ଗାଳିଦେଲା — ବେଶୀ ଗୋଟେ ଫାଜିଲ୍ ହେଉଛି ! ହଷ୍ଟେଲକୁ ଚାଲ ତୋତେ ଆଜି ମଜା ଚଖାଉଛି।

ଏଇ ଘଟଣା ପରେ କୁବୁଜା ଜାଣିଜାଣି ଶ୍ୱେତାକୁ ଦୁଇଟା ଗୁପଚୁପ୍ ଅଧିକା ଦେବାବେଳେ ଶ୍ୱେତା ମନା କଲା- ସେମିତି କଲେ ତୁମ ବ୍ୟବସାୟ ବୁଡ଼ିଯିବ।

ଆନନ୍ଦ ଚନ୍ଦ୍ର ପତି

କୁବୁଜାର ମୁହଁ ଲାଜରେ ବିବର୍ଣ୍ଣ ଦିଶିଲା। ଶ୍ୱେତା ଗୁପ୍‌ଚୁପ୍ ଖାଉ ଖାଉ ପଚାରିଲା—ତୁମକୁ ସମସ୍ତେ କୁବୁଜା ଡାକନ୍ତି। ତମର କ'ଣ ଅନ୍ୟ କିଛି ଭଲ ନାମ ନାହିଁ?

କୁବୁଜା କହିଲା–ମୋ ନାଆଁ ନଟ। ନଟବର। କିନ୍ତୁ ମତେ ଏ ନାଆଁରେ ମୋ ମାଆ ବ୍ୟତୀତ ଆଉ କେହି ଡାକନ୍ତି ନାହିଁ।

: ଆଚ୍ଛା ମୁଁ ଆଜିଠୁ ତୁମକୁ ନଟବର ଡ଼ାକିବି?

: ତମେ ଜଣେ ଡ଼ାକିଲେ କଣ ହେବ? ଅନ୍ୟମାନେ ତ......

: ଆଚ୍ଛା ତମ ପିଠିରେ ଏ କୁଜଟା ତମର ଜନ୍ମରୁ ନା ପରେ କିଛି ରୋଗ ଯୋଗୁ....?

କୁବୁଜାର ଆଖି ଛଳ ଛଳ ହୋଇଗଲା। ସିଏ କହିଲା—ମତେ ସେତେବେଳେ ମୋଟେ ସାତବର୍ଷ। ମତେ କ'ଣ ଗୋଟେ ରୋଗ ହେଲା। ଆମ ଗାଆଁର କେହି ରୋଗ ଚିହ୍ନି ପାରିଲେ ନାହିଁ। କିଛି ଦିନ ପରେ ମୋ ପିଠିଟା ବଙ୍କା ହୋଇଗଲା।

: ଏବେ ତମେ ଡାକ୍ତର ଦେଖାଉନା, ଭଲ ହୋଇ ଯାଇ ପାରେ?

କୁବୁଜା କହିଲା—ଇଏ ଯାହା ଯେମିତି ହୋଇଛି ଔଷଧରେ ଭଲ ହେବାର ଆଶା ଆଉ ନାହିଁ ବୋଲି ଡାକ୍ତର କହିଲେ। ମୁଁ ଟଙ୍କା ଏକାଠି କରୁଛି। ପଇସା ହେଇଗଲେ ଏକାଥରେ ପିଠି, ଦାନ୍ତ ଆଉ ଭାତୁଡ଼ି ଅପରେସନ୍ କରାଇବି।

କଥାବାର୍ତ୍ତା ଭିତରକୁ ପଶିଆସିଲା ହେମାଙ୍ଗୀ। ଥଟ୍ଟା କରି କହିଲା—ଆମ କଲେଜ କୁଇନ୍‌ଙ୍କ ସାଙ୍ଗରେ କ'ଣ ଏତେ ଗପୁଛ? ତୁମେ ଜାଣ କଲେଜ କୁଇନ୍ ହେଲେ ରାଜଜେମା। ତାଙ୍କ ସାଙ୍ଗରେ ସିଧା କେହି କଥାବାର୍ତ୍ତା କରିବା ମନା। ତାଙ୍କ ସହିତ କଥାବାର୍ତ୍ତା କରିବାକୁ ହେଲେ ତାଙ୍କ ସହଚରୀଙ୍କ ସାହଚର୍ଯ୍ୟ ନେବାକୁ ହୁଏ। ମୁଁ ଆସିଗଲି। ଯାହା କହିବାର ଅଛି ମୋ ଆଗେ କୁହ।

ହେମାଙ୍ଗୀର କଥାରେ ଶ୍ୱେତାର ଗୋରା ଗାଲ ଦୁଇଟା ଲାଜରେ ଲାଲ ପଡ଼ିଗଲା। କୁବୁଜା ମୁରୁକି ମୁରୁକି ହସିଲା। କୁବୁଜାର ହସ ଖୁବ୍ ଭୟଙ୍କର। ସେ ହସିଲେ ତା ମୁହଁର ବସନ୍ତ ଚିହ୍ନଗୁଡ଼ାକ ଅଧିକ ଗାଢ଼ ଗାଢ଼ ଦିଶେ। ଆଗ ଦାନ୍ତ ଦୁଇଟା ତାର ସୀମା ବାହାରକୁ ଚାଲିଆସେ। ଭାତୁଡ଼ିଟା ଆହୁରି ବଡ଼ ଦିଶେ।

ଦିନେ ସକାଳ ୯ଟାରୁ ବର୍ଷା ଆରମ୍ଭ ହେଲା ଯେ ଦିନ ଦୁଇଟା ପର୍ଯ୍ୟନ୍ତ ଲାଗି ରହିଲା। କେତେବେଳେ ଖୁବ୍ ଜୋରରେ ଆଉ କେତେବେଳେ ଝିପିଝିପି। ରମାଦେବୀ କଲେଜ ଆଗରେ କେବଳ ଗୁପ୍‌ଚୁପ୍ ଧରି ଠିଆ ହୋଇଛି କୁବୁଜା। ଆଉ କୌଣସି ଚାର୍ଟ ଦୋକାନ କି ଗୁପ୍‌ଚୁପ୍ ଦୋକାନ ନାହିଁ। ବର୍ଷାକୁ ଡ଼ରି ଆଉ କେହି ଆସି ନାହାଁନ୍ତି। କୁବୁଜା ମୁଣ୍ଡରେ ଗୋଟେ ଛରି ପକାଇ ଅଧାଅଧା

ତିନି ଗୁପ୍‌ଚୁପ୍ ବିକ୍ରି କରୁଛି। କଲେଜ ଝିଅମାନେ ଛତା ଧରି ତା ପାଖରୁ ଗୁପ୍‌ଚୁପ୍ ଖାଉଛନ୍ତି। ଶ୍ୱେତା ଆଉ ହେମାଙ୍ଗୀ କୁବୁଜାର ଗୁପ୍‌ଚୁପ୍ ଦୋକାନରେ ପହଞ୍ଚିଲେ।

କୁବୁଜା କହିଲା—ଆସ ତମେ ଚଞ୍ଚଳ ଗୁପ୍‌ଚୁପ୍ ନିଅ, ମୁଁ ଯିବି। ମୁଁ ଅନେକ ବେଳୁ ବର୍ଷାରେ ତିନ୍ତିଲିଣି। ମୋ ଦେହ ହାତ ଥରିଲାଣି। ଏ ଜରିଟା ବର୍ଷାକୁ ସମ୍ଭାଳୁ ନାହିଁ।

ଶ୍ୱେତା ଗୁପ୍‌ଚୁପ୍ ଖାଉ ଖାଉ କହିଲା—ଏତେ ବର୍ଷାରେ ନଆସିଥିଲେ ଚଳିଥାନ୍ତା। ବର୍ଷାରେ ଏମିତି ତିନ୍ତିଲେ ଜର ହୋଇପାରେ। କୁବୁଜା କିଛି ନ କହି କେବଳ ମୁରୁମୁରୁ ହସୁଥିଲା। ତା ଦେହରେ ଜ୍ୱରର ଉତ୍ତାପ ଦାଉ ଦାଉ ଜଳୁଥିଲେ ମଧ୍ୟ ସିଏ ଗୁପ୍‌ଚୁପ୍ ଧରି ଆସିଥିଲା। କୁବୁଜା ଶ୍ୱେତା ହାତକୁ ଗୁପ୍‌ଚୁପ୍ ବଢ଼ାଇ ଦେବାବେଳେ ଜ୍ୱରର ପ୍ରକୋପରେ ତା ହାତଟା ଥର ଥର ହେଉଥିବା ଶ୍ୱେତାର ଦୃଷ୍ଟିରେ ପଡିଥିଲା। ସେଦିନ ଅଳ୍ପ ସମୟ ପରେ କୁବୁଜା ଗୁପ୍‌ଚୁପ୍ ବିକ୍ରି ବନ୍ଦ କରି ଘରକୁ ଫେରି ଗଲା। ଜ୍ୱର ଛାଡ଼ି ନ ଥିଲେ ବି ତାପର ଦିନ ଗୁପ୍‌ଚୁପ୍ ଧରି ଆସିଲା।

କେବଳ ରବିବାର ଦିନ କିମ୍ବା କଲେଜର ଛୁଟି ଦିନ ବ୍ୟତୀତ ଅନ୍ୟ କୌଣସି ଦିନ କୁବୁଜାର ଗୁପ୍‌ଚୁପ୍ ଦୋକାନ ବନ୍ଦ ହୁଏ ନାହିଁ। ରବିବାର ଦିନ କଲେଜ ଛୁଟି। ସେ ଦିନଟି କୁବୁଜାର ମଧ୍ୟ ଛୁଟି। କୁବୁଜା ପ୍ରତି ରବିବାର ଯାଏ ସିନେମା। ଗ୍ରୀଷ୍ମଦିନର ଲମ୍ବ ଛୁଟିରେ କୁବୁଜା ଯାଏ ଗାଁକୁ। ପୂଜା ଛୁଟିରେ ସିଏ ଯାଏ ତା ମାମୁଘର ଗାଁକୁ।

କୁବୁଜା ତା ଗାଁ କଥା କହିଲା ବେଳେ ଖୁବ୍ ରୋମାଞ୍ଚିତ ହୁଏ। ଗାଁ ପୋଖରୀ, ଆମ୍ବ ତୋଟା, ପାହାଡ଼, ଧାନବିଲ, ଗାଁ ମଙ୍ଗଳା କଥା ବର୍ଣ୍ଣନା କଲାବେଳେ ଖୁସି ଖୁସିର ଭାବ ତାର ଅଠେଇଶବର୍ଷିଆ ବଳିଷ୍ଠ ଯୁବକ ଦେହ ଓ ମୁହଁରୁ ସ୍ପଷ୍ଟ ହେଉଥିଲା। ତା ଗାଁରେ ସିଏ ତା ସାଙ୍ଗମାନଙ୍କ ସହ ଆମ୍ବ, ପିଜୁଳି, କେନ୍ଦୁ, ଖଜୁରୀ, ବରକୋଳି, ଜାମୁକୋଳି, କଣ୍ଟେଇକୋଳି, ମଟେଇ, କାକୁଡ଼ି, ମକା ଖାଉଥିବା କଥା କହି ଖୁସି ହୁଏ।

ଶ୍ୱେତା କହେ—ଆମେ ସେ ସବୁ ଏଠି ପାଇବାର ସୁବିଧା ନାହିଁ। ଆମ ଘର ବି ଗୋଟେ ଛୋଟ ଟାଉନ୍‌ରେ। ସେଠି ଏସବୁ ସାତ ସପନ। ଆମେ ଏ ଗୁପ୍‌ଚୁପ୍ ଆଉ ଚାର୍ଟରୁ ହେ ସବୁର ସ୍ୱାଦ ଖୋଜୁ।

ହେମାଙ୍ଗୀ କହିଲା—ପାହାଡଟା ଆମ ପାଇଁ ସବୁଦିନ ଦୂର ପାହାଡ଼ ହୋଇ ରହିଗଲା। କେବଳ ବସ୍ ଆଉ ଟ୍ରେନ୍‌ର ଝରକାରୁ ଆମେ ପାହାଡ଼ ଦେଖିଛୁ। ପାହାଡ଼ର ପଥର, ଗଛ, ଫୁଲ, ଫଳ, ପଶୁ, ପକ୍ଷୀ କେତେ ସୁନ୍ଦର ହୋଇ ନଥିବେ ସତେ!

ଆନନ୍ଦ ଚନ୍ଦ୍ର ପତି

କୁବୁଜା ତା ଗାଁଆଁ ପାହାଡ଼ର ଦୃଶ୍ୟ ବର୍ଣ୍ଣନା କରେ। ତାଙ୍କ ଗାଁଆଁଠୁ ମୋଟେ ପାଞ୍ଚ ଶହ ଫୁଟ ଦୂରରେ ପାହାଡ଼। ପାହାଡ଼ରେ କଳାକଳା ବଡ଼ ବଡ଼ ପଥର। ଖୁବ୍ ବଡ଼ ବଡ଼ ଗଛ। ଗୋଟେ ଗୋଟେ ଗଛର ଉଚ୍ଚତା ଏଠିକା ନଅତାଲା କୋଠାର ଉଚ୍ଚତା ସହିତ ସମାନ। ପାହାଡରୁ କୁଳୁକୁଳୁ ଗୀତଗାଇ ଝରଣାଟିଏ ବହିଯାଉଛି। ପାହାଡ଼ରେ ବଣୁଆ ପଶୁ, ପକ୍ଷୀ ଭର୍ତ୍ତି। ପ୍ରତି ଦିନ ମୟୂରର ଡ଼ାକ ଗାଁଆଁ ଭିତରକୁ ଶୁଭେ। ଦିନେ ଦିନେ ପାହାଡ଼ ତଳି ଅଞ୍ଚଳରେ ମୟୂର ପକ୍ଷୀ ମେଲାଇ ନାଚ କରେ। ବିଲରେ ଧାନ ପାଚିଲାବେଳେ ଦଳଦଳ ହାତୀ ପାହାଡ଼ରୁ ଓହ୍ଲାଇ ଧାନ ଖାଇ ଯାଆନ୍ତି। ପ୍ରତିବର୍ଷ ରଜ ବେଳକୁ ଆମ ଗାଁଆଁ ଟୋକା ପାହାଡ଼ ଚୂଳରେ ଚଢ଼ି ସେଠି ପତକା ମାରନ୍ତି। ଫେରିଲା ବେଳକୁ ପାହାଡ଼ରୁ ଲୋଟଣୀ ଡଙ୍କ, ମଟେଇ ଓ କାଙ୍କଡ଼ ଆଣନ୍ତି।

ପାହାଡ଼ର ବର୍ଣ୍ଣନା ଶୁଣି ଶ୍ୱେତା ଆଉ ହେମାଙ୍ଗୀ ରୋମାଞ୍ଚିତ ହୁଅନ୍ତି।

ବେଳେ ବେଳେ କମନ୍‌ରୁମ୍‌ରେ କୁବୁଜାର ଗୁପ୍‌ଚୁପ୍ ଉପରେ ଆଲୋଚନା ପଡ଼େ। ଆଲୋଚନାଟା ଗୁପ୍‌ଚୁପ୍ ଉପରୁ କୁବୁଜା ଉପରକୁ ଲଟେଇ ଯାଏ। କୁବୁଜା ପରି ଅସୁନ୍ଦର ମଣିଷ ଆଗରୁ କେହି ଦେଖି ନାହାଁନ୍ତି ବୋଲି କେତେକ କୁହନ୍ତି। କିଏ କହେ କଲେଜ ଦୁଆର ମୁହଁରେ ଏମିତି ଗୋଟେ ଅସୁନ୍ଦର ଯୁବକକୁ ଦେଖିଲେ ଦିନ ଯାକର ସବୁ କାମ ଅସୁନ୍ଦର ହେବ। ଆଉ କିଏ କହେ ଅସୁନ୍ଦର ଅଶୁଭ। ଆଉ କିଏ କହେ ସବୁଠୁ ଅସୁନ୍ଦର ମଣିଷ ଭାବରେ ଗିନିସ୍ ବୁକ୍‌ରେ କୁବୁଜା ନାଁଆଁ ରହିବା କଥା।

କଲେଜର ସବୁପିଲା ଆଶ୍ଚର୍ଯ୍ୟ ହେଲେ ଯେଉଁ ଦିନ କୁବୁଜା ଗୁପ୍‌ଚୁପ୍ ବିକ୍ରି କରିବାକୁ କଲେଜ ସାମ୍‌ନାକୁ ଅସିଲା ନାହିଁ। କୁବୁଜା ଅନୁପସ୍ଥିତ ହେବା ଏକଦମ୍ ନୂଆ ଘଟଣା। କଲେଜର ପ୍ରିନ୍ସିପାଲ, ଅଧ୍ୟାପିକା କିମ୍ୱା ପିଲା କିଏ କେତେବେଳେ ଅନୁପସ୍ଥିତ ହୁଅନ୍ତି; କିନ୍ତୁ କୁବୁଜା ଗୋଟିଏ ହେଲେ ଦିନ ଅନୁପସ୍ଥିତ ରହେ ନାହିଁ। ନିଶ୍ଚୟ କିଛି ବିଶେଷ ଅସୁବିଧା ଯୋଗୁ କୁବୁଜା ଆସି ପାରି ନାହିଁ।

କୁବୁଜାର ଅନୁପସ୍ଥିତି ତିନି ଦିନରେ ପହଞ୍ଚିଲା। ପିଲାମାନଙ୍କ ଭିତରେ କୁବୁଜା ସଂପର୍କରେ ଆଲୋଚନା ହେଲା। ହେମାଙ୍ଗୀ କଲେଜର ପିଅନ ବାବାଜିଠାରୁ ଶୁଣିଲା କୁବୁଜାର ବାପା ମରିଗଲେ। କୁବୁଜା ତା ବାପାଙ୍କ ଶୁଦ୍ଧିକ୍ରିୟା କରିବାକୁ ତା ନିଜ ଗାଁକୁ ଚାଲିଯାଇଛି। ଶ୍ୱେତା ଚାର୍ଟବାଲାଠୁ ଶୁଣିଲା ଆକ୍ସିଡେଣ୍ଟରେ କୁବୁଜାର ବାଁଆ ଗୋଡ଼ଟା ଆଣ୍ଠୁ ପାଖରୁ ଭାଙ୍ଗିଯାଇଚି। ସିଏ ଭୁବନେଶ୍ୱର ଡାକ୍ତରଖାନାରେ ପଡିଛି।

ଜଣେ ଅଧ୍ୟାପିକା କଲେଜ ଛକ ପାନ ଦୋକାନରୁ ଶୁଣିଲେ କୁବୁଜାକୁ ପୋଲିସ ଧରି ନେଇଛନ୍ତି। ପୋଲିସ ମାଡ଼ମାରି ତା ଗାଲ, ନାକ ରକ୍ତାକ୍ତ କରିଦେଇଛି। କୁବୁଜାକୁ ଆଜୀବନ ଜେଲ ହୋଇଯିବ।

ମହିଳା କଲେଜ ହଷ୍ଟେଲ ପାଚେରି ପାଖକୁ ଲାଗିଥିବା ଝୁମ୍ପୁଡ଼ି ବସ୍ତିରେ କୁବୁଜାର ଘର ବୋଲି ସିଏ ନିଜେ କହୁଥିଲା। ଶ୍ୱେତା ହଷ୍ଟେଲ ଛାତ ଉପରେ ଠିଆ ହୋଇ ଝୁମ୍ପୁଡ଼ି ଆଡକୁ ଚାହିଁଲା। ଝୁମ୍ପୁଡ଼ି ଘର ସାମ୍ନାରେ ଗୁପଚୁପ୍ ଗାଡ଼ିଟା ଚୁପ୍ ଚାପ୍ ଠିଆ ହୋଇଛି। କିନ୍ତୁ କୁବୁଜା ଦେଖାଯାଉ ନାହିଁ। ଏତେ ଦୂରରୁ ମଣିଷ ଚିହ୍ନି ହୁଅନ୍ତା ନାହିଁ; କିନ୍ତୁ କୁବୁଜାକୁ ଚିହ୍ନିହେବ। ଶ୍ୱେତା ଅନେକ ସମୟ ହଷ୍ଟେଲ ଛାତ ଉପରେ ଠିଆ ହୋଇ ରହିଲା। ଝୁମ୍ପୁଡ଼ି ବସ୍ତିର ଦାଣ୍ଡରେ ଲୋକ ଯିବା ଆସିବା କରିବାର ଦେଖିଲା, କିନ୍ତୁ କୁବୁଜା ନାହିଁ।

ହଠାତ୍ ଦିନେ କୁବୁଜା ଗୁପଚୁପ୍ ଧରି କଲେଜ ଆସିଲା। ତା ମୁହଁରେ ଦାଢ଼ି ବଢ଼ି ଯାଇଛି। ମୁହଁ ଶୁଖି ଯାଇଛି, ଆଗ ପରି ଚଞ୍ଚଳ ନାହିଁ। ଖୁବ୍ ଗମ୍ଭୀର ଆଉ ମନ୍ଥର ଜଣା ଯାଉଛି। କଲେଜର ଝିଅମାନେ କୁବୁଜା ଚାରିପଟେ ରୁଣ୍ଡ ହୋଇ ତାକୁ ଆଶ୍ଚର୍ଯ୍ୟ ଆଖିରେ ଦେଖୁଛନ୍ତି। ତାକୁ ବିଭିନ୍ନ ପ୍ରଶ୍ନ ପଚାରୁଛନ୍ତି। ଆକ୍ସିଡେଣ୍ଟ, ଥାନା, ଜେଲ, ବ୍ରାଉନସୁଗାର ସଂପର୍କରେ ଅନେକ ପ୍ରଶ୍ନ। ସମସ୍ତଙ୍କ ଦୃଷ୍ଟିରେ ସିଏ ଜଣେ ଦୁର୍ଦ୍ଧାନ୍ତ ଅପରାଧୀ। ତା ଚାରିପାଖରେ ଅନେକ ଧାରୁଆ ସଂଦେହୀ ଦୃଷ୍ଟି।

ସମସ୍ତଙ୍କ ପ୍ରଶ୍ନ ଶୁଣିବା ପରେ ଧୀର ସ୍ଥିର ଭାବେ କୁବୁଜା ସମସ୍ତଙ୍କୁ କେବଳ ଗୋଟିଏ ଉତ୍ତର ଦେଲା—ଆକ୍ସିଡେଣ୍ଟ, ଥାନା, ଜେଲ କି ବ୍ରାଉନ୍ ସୁଗାର ବିଷୟରେ ମୁଁ କିଛି ଜାଣିନାହିଁ। ଏ ସବୁ ମିଛ କଥା। ମୁଁ ଘରେ ଥିଲି। ମୋ ଦେହ ଭଲ ନଥିଲା।

କୁବୁଜାର ଉତ୍ତରରେ କେହି ସନ୍ତୁଷ୍ଟ ହେଲେ ନାହିଁ। ସମସ୍ତଙ୍କ ଧାରଣା ହେଲା କୁବୁଜା ପ୍ରକୃତ କଥା ପ୍ରକାଶ ନ କରି ମିଛ କହୁଛି। କିନ୍ତୁ କୌଣସି କଥା ଲୁଚିବ ନାହିଁ। ଆଉ କେତେକ କୁବୁଜାଠାରୁ ତା ଦେହ ଖରାପ ସଂପର୍କରେ ଓ ତାର ଚିକିତ୍ସା ସଂପର୍କରେ ପଚାରି ବୁଝିଥିଲେ। କୁବୁଜା କହିଥିଲା ସିଏ ଗାଧୁଆ ତୁଠରେ ପଡିଗଲା। ତାର ମୁଣ୍ଡର ପଛପଟେ ମାଡ଼ ହୋଇଗଲା। ତାର ଚେତା ବୁଡ଼ିଗଲା। ଡାକ୍ତର ଚିକିତ୍ସା କଲାପରେ ଚେତା ଆସିଲା। ଡାକ୍ତରଙ୍କ ପରାମର୍ଶ ଅନୁସାରେ କୁବୁଜା କିଛି ଦିନ ବିଶ୍ରାମ ନେଇ ଆଜି ଗୁପଚୁପ୍ ବିକ୍ରି କରିବାକୁ ଆସିଛି।

ଆନନ୍ଦ ଚନ୍ଦ୍ର ପତି

କୁବୁଜାର ଏ ସଫେଇ କାହାରିକୁ ସନ୍ତୁଷ୍ଟ କରି ପାରିନଥିଲା। କୁବୁଜା ଚାରିପାଖରୁ ଅନ୍ୟ ଝିଅମାନଙ୍କର ଗହଳି କମିବା ପରେ ଶ୍ୱେତା ଆଉ ହେମାଙ୍ଗୀ ଆସିଲେ। କୁବୁଜା ଆସିବା କଥା ସେମାନେ ଅନେକ ବେଳୁ ଶୁଣିଛନ୍ତି; କିନ୍ତୁ ଜାଣି ଜାଣି ବିଳମ୍ବ କରି ଆସିଛନ୍ତି।

ଶ୍ୱେତା ଆଉ ହେମାଙ୍ଗୀ ଚୁପ୍‌ଚାପ୍ ଆସି କୁବୁଜାଠୁ ଗୁପ୍‌ଚୁପ୍ ଖାଇଲେ। ଗୁପ୍‌ଚୁପ୍ ଖାଇ ଦୁହେଁ ଫେରି ଗଲାବେଳେ କୁବୁଜାର ଆଖି ଲୁହରେ ଛଳ ଛଳ ହେଲା।

କୁବୁଜା ସେମାନଙ୍କୁ ପଛରୁ ଡାକି କହିଲା—ଦିଦି! ତମେ ବି ମତେ ଭୁଲ ବୁଝିଲ? ମତେ ବିଶ୍ୱାସ କର ଦିଦି, ମୁଁ କିଛି ଖରାପ କାମ କରି ନାହିଁ କି ଥାନା ଦୁଆର ମୁହଁ ମାଡି ନାହିଁ। ମୋ ଦେହ ଖରାପ ଥିଲା।

ହେମାଙ୍ଗୀ କହିଲା—କାହିଁ ତୁମେ ତ ସେମିତି କିଛି ଅସୁସ୍ଥ ଦେଖା ଯାଉନ। ତମର କ'ଣ ହୋଇଥିଲା? ମୁଁ ଶୁଣିଲି ତୁମେ କୁଆଡେ ଗାଧୁଆ ତୁଠରେ ପଡିଗଲ। ତୁମ ମୁଣ୍ଡ ମାଡ ହୋଇଗଲା। ଏ କଥାଟା ମୋତେ ବିଶ୍ୱାସଯୋଗ୍ୟ ନୁହଁ। କୋଉ ତୁଠରେ ତୁମେ ପ୍ରତିଦିନ ଗାଧାଅ? ମୁଁ ଜାଣିବାରେ ତୁମ ଝୁମ୍ପୁଡ଼ି ବସ୍ତିରେ ଥିବା ଟିଉବ୍ ୱେଲର ପାଣି ନେଇ ତୁମର ସମସ୍ତେ ଗାଧାନ୍ତି।

କୁବୁଜା କହିଲା—ତୁମକୁ ମୁଁ ମିଛ କହିବି ନାହିଁ ଦିଦି, ସତରେ ମୁଁ ପଡିଗଲି। ମୋ ମୁଣ୍ଡରେ ପଛପଟ ମାଡ ହେଇଗଲା। ମୁଁ ବେହୋସ ହୋଇଗଲି। କିନ୍ତୁ ମୁଁ ଗାଧୁଆ ତୁଠରେ ପଡିନାହିଁ।

ଏତେବେଳ ଯାଏ ଚୁପ୍‌ଚାପ୍ ଠିଆ ହୋଇଥିବା ଶ୍ୱେତା କହିଲା—ଆଉ ତାହେଲେ ତମେ କେମିତି ପଡିଲ?

କୁବୁଜାର ମୁହଁ ଲାଜ ଲାଜ ଦିଶିଲା। ସେ କିଛି ନ କହି ଛେପ ଢୋକିଲା। ସେ କିଛି କହିବାକୁ ନିଜକୁ ପ୍ରସ୍ତୁତ କରୁଛି।

ଶ୍ୱେତା ଆଉ ହେମାଙ୍ଗୀ କୁବୁଜାର କଥା ଶୁଣିବା ପାଇଁ ଅପେକ୍ଷା କଲେ।

କୁବୁଜା କହିଲା—ମୋ ତଳେ ମୋଠୁ ଦୁଇ ବର୍ଷ ସାନ ମୋର ଗୋଟେ ଭାଇ ଅଛି। ତାଁ ନାଆଁ ଦିବାକର।

ଶ୍ୱେତା କହିଲା—ତୁମ ନାଆଁ ନଟବର ଆଉ ତୁମ ସାନ ଭାଇ ନାଆଁ ଦିବାକର। ସିଏ କଣ ତୁମପରି.....।

—ନାଇଁ ନାଇଁ, ସିଏ ମୋ ପରି ମୋଟେ ନୁହଁ। ତା ପିଠିରେ ମୋ ପରି କୁଜ ନାହିଁ। ତା ରଙ୍ଗ ଗୋରା। ସିଏ ସୁନ୍ଦର।

ହେମାଙ୍ଗୀ ବାଧା ଦେଇ ପଚାରିଲା—ଇଏ ତ ତୁମ ସାନ ଭାଇ କଥା। ତୁମ ଦେହ ଖରାପ କଥା କ'ଣ ହେଲା?

ଆନନ୍ଦ ଚନ୍ଦ୍ର ପହି

କୁବୁଜା କହିଲା—ମୁଁ ସେଇ କଥା କହୁଛି। ମୋ ବାପା ଆମ ଦିବାକରର ବାହାଘର କରିବାକୁ ବ୍ୟସ୍ତ ହେଲେଣି। କିନ୍ତୁ ମୋ ବାହାଘର ନହେଲେ ତା' ବାହାଘର ହୋଇ ପାରିବ ନାହିଁ। ତେଣୁ ମୋ ବାପା ମୋ ବାହାଘର ଗୋଟେ ଜାଗାରେ ଠିକ୍ କରିଛନ୍ତି।

ହେମାଙ୍ଗୀ ଓ ଶ୍ୱେତା ଖୁସି ହୋଇ କହିଲେ—ଇଏ ତ ଖୁବ୍ ଖୁସିର କଥା। ଆମକୁ କେବେ ଭୋଜି ମିଳିବ ?

—ମୋ ବାପା ମୋ ପାଇଁ ଯେଉଁ ଝିଅ ଠିକ୍ କରିଛନ୍ତି ସିଏ ଗୋଟେ କୁଜୀ।

ହେମାଙ୍ଗୀ ଆଉ ଶ୍ୱେତା ଦୁହେଁ ଆଶ୍ଚର୍ଯ୍ୟ ହେଲେ। କୁଜା ପରି ଅସୁନ୍ଦର ପୁରୁଷ ପୁଣି କୁଜୀକୁ ବିବାହ କରିବାକୁ ଅନିଚ୍ଛୁକ।

ଶ୍ୱେତା କହିଲା—ତମ ମନକୁ ଯଦି ସେ ଝିଅ ନ ପାଉଚି ତାକୁ ବିବାହ ନ କର। ତୁମ ବାପାଙ୍କୁ ମନା କରିଦିଅ।

ମୁଁ ବାପାଙ୍କୁ ରୋକ୍‌ଠୋକ୍ ମନା କରି ଦେଲି, ମୁଁ ସେ କୁଜୀଟାକୁ ବାହା ହେବି ନାହିଁ। କିନ୍ତୁ ମୋ ବାପା, ବୋଉ ଆଉ ସାନ ଭାଇ ସେଇ କୁଜୀକୁ ବାହା ହେବାକୁ ମୋତେ ବାଧ କଲେ।

ଶ୍ୱେତା ଆଉ ହେମାଙ୍ଗୀ ପରସ୍ପର ମୁହଁକୁ ଚାହିଁଲେ। ମଣିଷ ଏ ପୃଥିବୀରେ ସବୁଠୁ ଆଶ୍ଚର୍ଯ୍ୟ ଜୀବ।

କୁବୁଜା କହିଲା—ଅସଲ କଥାଟା ହେଲା ମୋ ବାହାଘର ନ ତୁଟିଲେ ଦିବାକର ବାହାଘର ହୋଇ ପାରିବ ନାହିଁ। ଦିବାକର ପାଇଁ ଗୋଟିଏ ଭଲ ଝିଅ ମିଳିଛି। ସେଇ କୁଜୀକୁ ବାହା ହେବା ପାଇଁ ମୋତେ ବାଧ କଲେ। ସେଇ କୁଜୀକୁ ବାହା ନ ହେଲେ ସାରା ଜୀବନ ଅବିବାହିତ ରହିବାକୁ ପଡ଼ିବ ବୋଲି ମୋତେ ଧମକ ଦେଲେ। ମୋ ବୋଉ ମୋ ବାପାଙ୍କ କାନରେ କ'ଣ ଫୁସ୍ ଫୁସ୍ କରି କହିଲା। ବାପା ମୋତେ ପଚାରିଲେ—ଆଚ୍ଛା, ତୁ କେଉଁ ଝିଅକୁ ଭଲ ପାଉଛୁ ଯଦି କହ, ମୁଁ ତା ସହିତ ତୋର ବାହାଘର କରାଇ ଦେବି।

ମୁଁ କିଛି ନ କହି ଚୁପ୍ ରହିଲି। ବାପା ଧମକ ଦେଇ ମତେ ବାରମ୍ବାର ପଚାରିଲେ—କହ ତୁ କେଉଁ ଝିଅକୁ ଭଲ ପାଉଛୁ ?

ମୁଁ କିଛି ନ କହି ମୁହଁ ତଳକୁ କରି ଠିଆ ହେଲି। ବାପା ରାଗି ଯାଇ ମୋ ଗାଲକୁ ଗୋଟେ ଶକ୍ତ ଚାପୁଡା ମାରିବା ବେଳେ ମୁଁ ଭୟରେ ମୁହଁ ବୁଲାଇ ନେଲି। ଚାପୁଡାଟା ମୋ ବାଁ କାନ ଉପରେ ବସିଲା। ମୋ ମୁଣ୍ଡ ବୁଲାଇ ଦେଲା। ମୁଁ ଘୂରି ଘୂରି ତଳେ ପଡିଗଲି। ମୋ ମୁଣ୍ଡର ପଛ ପଟଟା ପଥରରେ ମାଡ ହୋଇଗଲା। ମୋର ହୋସ ବୁଡିଗଲା।

ଆନନ୍ଦ ଚନ୍ଦ୍ର ପହି

କୁବୁଜାର କଥା ଶୁଣିବା ପରେ ଶ୍ୱେତା ଓ ହେମାଙ୍ଗୀ କିଛି ସମୟ ପାଇଁ ନୀରବରେ ଠିଆ ହେଲେ। କୁବୁଜା ମଧ୍ୟ ମୁହଁ ତଳକୁ କରି ଚୁପ୍‌ଚାପ୍ ଠିଆ ହେଲା। ଶ୍ୱେତା ହେମାଙ୍ଗୀ ମୁହଁକୁ ଓ ହେମାଙ୍ଗୀ ଶ୍ୱେତା ମୁହଁକୁ କିଛି ସମୟ ଚାହିଁବା ପରେ ଉଭୟ ପୁଣି କୁବୁଜା ଉପରେ ଦୃଷ୍ଟି ପକାଇଲେ। କୁବୁଜା ତଳକୁ ମୁହଁ ପୋତି ଠିଆ ହୋଇଛି।

କିଛି ସମୟ ନୀରବତା ପରେ ଶ୍ୱେତା ପଚାରିଲା—ନଟବର! ତମେ କ'ଣ ସତରେ ଆଉ କେଉଁ ଝିଅକୁ ଭଲ ପାଉଛ?

କୁବୁଜା ଦେହଟା ମୁହଁ ସହିତ ବିବର୍ଣ୍ଣ ଦିଶିଲା। ତା ଦେହ ଦୋହଲାଇ ଗୋଟେ ସୂକ୍ଷ୍ମ ଭାବୋଲ୍ଲାସ ଉଠି ଆସୁ ଆସୁ ପୁଣି ଦେହ ଭିତରେ ଚାପି ହୋଇଗଲା। କୁବୁଜା ମୁହଁ ତଳକୁ କରି ପାଦର ବୁଢା ଆଙ୍ଗୁଠିରେ ଭୂଇଁରେ ଗାର କାଟିଲା।

ଶ୍ୱେତା ଆଉ ହେମାଙ୍ଗୀ କିଛି ସମୟ ନୀରବରେ ଠିଆ ହେଲେ କୁବୁଜାର ଉତ୍ତରକୁ ଅପେକ୍ଷା କରି। କୁବୁଜାର ଓଠ ଥରୁଛି କିଛି କହିବାର ପ୍ରଚୁର ସମ୍ଭାବନାକୁ ଧରି; କିନ୍ତୁ କୁବୁଜା କିଛି କହିବାକୁ ସମର୍ଥ ହୋଇ ପାରୁନାହିଁ। ଓଠ ଦୁଇଟା ମେଲେରିଆ ରୋଗୀ ପରି ଅନେକ ସମୟ ଥରି ସ୍ଥିର ହୋଇଗଲା।

ଶ୍ୱେତା ଆଉ ହେମାଙ୍ଗୀ କ୍ଲାସକୁ ଫେରିଲେ। କ୍ଲାସ ରୁମ୍ ବାରଣ୍ଡାରେ ଠିଆ ହୋଇ କଲେଜ ଗେଟ୍ ପାଖକୁ ଦୃଷ୍ଟି ଫେରାଇଲେ। କୁବୁଜାର ଗୁପ୍‌ଚୁପ୍ ଗାଡ଼ି ଚୁପ୍‌ଚାପ୍ ଠିଆ ହୋଇଛି। କୁବୁଜା ଠିଆ ଠିଆ ତଳକୁ ମୁହଁ ପୋତି ପାଦର ବୁଢ଼ା ଆଙ୍ଗୁଠିରେ ଭୂଇଁରେ ଗାର କାଟି ଚାଲିଛି।

ଶ୍ୱେତା ଓ ହେମାଙ୍ଗୀ କ୍ଲାସକୁ ଗଲେ। କଲେଜ ଛୁଟି ହେଲା। ସନ୍ଧ୍ୟା ହେଲା। ଶ୍ୱେତା ହଷ୍ଟେଲ ଝରକାରୁ ଚାହିଁଲା। କୁବୁଜା ସେଇଠି ସେମିତି ଠିଆ ହୋଇ ପାଦରେ ଗାର କାଟୁଛି। ଶ୍ୱେତା ଉଠିଯାଇ ଝରକାର କବାଟଟାକୁ ବନ୍ଦ କରିଦେଲା।

ତା ପରଦିନ ଅତି ସକାଳୁ ଶ୍ୱେତା ତା କୋଠରୀର ଝରକା ଖୋଲିଲା। କଲେଜ ଗେଟ୍ ପାଖକୁ ଚାହିଁଲା। କୁବୁଜା ନାହିଁ, ଗୁପ୍‌ଚୁପ୍ ଗାଡି ନାହିଁ। କ୍ଲାସ ରୁମ୍‌ର ଝରକା ଦେଇ ଶ୍ୱେତା ଚାହିଁଲା କଲେଜ ଗେଟ୍ ପାଖକୁ; କିନ୍ତୁ କୁବୁଜା ନ ଥିଲା।

ସେଇ ଦିନଠୁ କୁବୁଜାର ଗୁପ୍‌ଚୁପ୍ ଗାଡି ଆଉ କଲେଜ ଗେଟ୍ ପାଖକୁ ଆସିଲା ନାହିଁ। କୁବୁଜା ନାଆଁରେ ପୁଣି ଅନେକ କଥା ସେ ମହିଳା କଲେଜ ଝିଅମାନେ ଆଲୋଚନା କଲେ। ସେ ଆଲୋଚନା ମଧ୍ୟରେ ଥିଲା ତିନୋଟି କଥା।

ଆନନ୍ଦ ଚନ୍ଦ୍ର ପତି

ପ୍ରଥମ କଥା ହେଲା — କୁବ୍ଜା ଅନ୍ୟ ଏକ ମହିଳା କଲେଜ ଆଗରେ ଗୁପ୍‌ଚୁପ୍ ବିକ୍ରି କରୁଛି।

ଦ୍ୱିତୀୟ କଥା ହେଲା — ବ୍ରାଉନ୍ ସୁଗାର କେଶ୍‌ରେ କୁବ୍ଜାକୁ ଜେଲ ହୋଇଗଲା। ସିଏ ବର୍ତ୍ତମାନ ଝାରପଡ଼ା ଜେଲ ଭିତରେ ଅଛି।

ତୃତୀୟ କଥାଟି — କୁବ୍ଜା ତାର କୁଜ, ଦାନ୍ତ ଓ ଭାତୁଡ଼ି ଅପରେସନ ପାଇଁ ଭେଲୋର ଯାଇଛି।



# ଅନାହାର ମୃତ୍ୟୁ

ଗାନ୍ଧାପଲ୍ଲୀ ଗାଆଁ ଦାଣ୍ଡରେ ବାଆଁ କର ମାଡ଼ି ଧୂଳି ଉପରେ ପଡ଼ିଛି ବାର ଚଉଦ ବର୍ଷର ପିଲାଟାଏ। ଦେହଟା ଫୁଲୁଲା। ଅଣ୍ଟା ପାଖରେ ଚୀରା, ଧୂଳିଆ ପ୍ୟାଣ୍ଟ। ପେଟ ପିଠି ଭିତରକୁ ପଶିଯାଇଛି। ଗୋଡ଼, ହାତ, ଦେହ ସବୁ ହାଡୁଆ।

ଶୀତ ସକାଳରେ ନିଆଁକୁ ଘେରି ଠିଆ ହେବା ପରି ପିଲାଟିର ଚାରିପାଖେ ଅନେକ ଲୋକଙ୍କ ଭିଡ଼। ଲୋକମାନଙ୍କ ଘେର ପିଲାଟି ଆଡ଼କୁ ଘୁଞ୍ଚି ଘୁଞ୍ଚି ଆସିଲା। ନିକଟରୁ ଅନେକ ଆଖି ଅଣ୍ଡାଳିଗଲା ପିଲାଟିକୁ।

ରୁଣ୍ଡ ହୋଇଥିବା ମଣିଷମାନଙ୍କ ମନରେ ପିଲାଟି ସଂପର୍କରେ ଅନେକ ଆଶଙ୍କା। ଅନେକ କଥା କଟାକଟି। ତେବେ ସମସ୍ତ ଆଶଙ୍କା ମଧ୍ୟରୁ ମୁଖ୍ୟ ଆଶଙ୍କାଗୁଡ଼ିକ ଏହି ପ୍ରକାର ଥିଲା:

ଏକ: ହୁଏତ ଏ ପିଲାଟି ଉପରେ କୌଣସି ଟ୍ରକବାଲା ଟ୍ରକ ଚଢ଼ାଇ ଦେଇ ଏଠି ଆଣି ପକାଇ ଦେଇଛି। ପିଲାଟି ଦରମରା ହୋଇ ପଡ଼ିଛି।

ଦୁଇ: ନା, ଏ ପିଲାଟି ଚରସ, ବ୍ରାଉନ୍‌ସୁଗାର, କି ହେରୋଇନ ପରି କିଛି ମାରାତ୍ମକ ନିଶା ଖାଇଥିବା ପିଲା। ହୁଏତ ନିଶା ଖାଇ ଏମିତି ମଲାଗଲା ପରି ପଡ଼ିଛି।

ତିନି: ଭିକାରି ପିଲାଟା। କାହା ଘରେ ରାତିରେ ପଶି ଚୋରି କରୁଥିଲା; ଧରା ପଡ଼ି, ମାଡ଼ ଖାଇ ପଡ଼ିଛି। ଉଠି ପାରୁନାହିଁ।

ଚାରି: ନା, ଏଟା ଅନ୍ନକଷ୍ଟିଆ ପିଲା। ଅନେକ ଦିନ ହେବ ନ ଖାଇ ନ ପିଇ ତା ପେଟ ପିଠିରେ ପଶିଛି। ଆଖିଗାତରେ ଆଖି ଗଳିଯାଇଛି। ଦେହରେ ହାଡ଼ ଠିଆଠିଆ। ଉପରେ କେବଳ ଚମଡ଼ା। ଅନାହାର ସହିତ ଲଢୁଛି ପିଲାଟା। ଖାଇଲେ ପିଇଲେ ପୁଣି ଉଠି ବସିବ।

ଆନନ୍ଦ ଚନ୍ଦ୍ର ପାହି

ଏତେ ସବୁ ଆଶଙ୍କା ଭିତରୁ ଶେଷ କଥାଟି ଅଧିକ ସତ୍ୟ, ଅଧିକ ବାସ୍ତବ ଲାଗିଲା। ପିଲାଟି ଅନାହାରକ୍ଳିଷ୍ଟ।

ପିଲାଟି ଦେହରେ ଗାଡ଼ି ମାଡ଼ି ଯାଇଥିଲେ ଖଣ୍ଡିଆ ଖାବରା ହୋଇଥାଆନ୍ତା। ନିଶା ଖାଇଥିଲେ ମୁହଁ ଆଉ ଆଖି ଶୁକ୍ରୁକିଆ ଶୁକ୍ରୁକିଆ/ଫୁଲକିଆ ଫୁଲକିଆ ଦିଶୁଥାନ୍ତା। ଚୋରି କରି ମାଡ଼ ଖାଇଥିବା ପିଲା ହୋଇଥିଲେ ଦେହରେ ମାଡ଼ ଚିହ୍ନ ଥାଆନ୍ତା।

ଅନାହାରର ସମସ୍ତ ଲକ୍ଷଣ ପିଲାଟିର ଦେହ, ମୁହଁରେ ସ୍ପଷ୍ଟ ହୋଇ ଫୁଟି ଉଠୁଥିଲା।

ଫଗୁଆ ପିଲାଟି ପାଖରେ ନଇଁ ପଡ଼ି ତା' ନାକ ପାଖରେ ହାତ ଦେଇ ନିଃଶ୍ୱାସ ବାରିଲା। ନିଃଶ୍ୱାସ ଚାଲୁଛି। ଛାତିଟା ନିଃଶ୍ୱାସ ପବନ ସାଙ୍ଗରେ ଉଠୁପଡ଼ ହେଉଛି। କିନ୍ତୁ ଆଖି ବନ୍ଦ ଅଛି। ଗୋଡ଼, ହାତ, ପାଟି, ଆଖି ସବୁ ବନ୍ଦ। ଲୋକମାନଙ୍କ ଉପସ୍ଥିତି ଜାଣି ପାରୁନାହିଁ ପିଲାଟା।

ଫଗୁଆ ପାଟି କରି ଡାକିଲା—ହେ ପିଲା! ତୋ ନାଆଁ କ'ଣ? ତୋ ଘର କେଉ ଗାଆଁରେ? ଏଠି ଏମିତି କାହିଁକି ପଡିଚୁ?

କିଛି ପ୍ରତିକ୍ରିୟା ନାହିଁ ପିଲାଟାର। ରୁଣ୍ଡ ହୋଇଥିବା ଗହ୍ଲାପଲ୍ଲୀର ଲୋକମାନେ ପାଟି କରି ଉଠିଲେ—ତାକୁ ହଲେଇ ଦେ ଫଗୁଆ! ହଲେଇ ଦେ।

ଫଗୁଆ ପିଲାଟାର ଆଉ ଟିକେ ପାଖକୁ ଆଗେଇ ଯାଇ ଖୁବ୍ ହାଲୁକା ଭାବେ ପିଲାଟିକୁ ହଲାଇ ଦେଇ ପଚାରିଲା—ହେ ପିଲା! ତୋ ନାଆଁ କ'ଣ?

ପିଲାଟିର ଦେହରେ, ମୁହଁରେ ସାମାନ୍ୟ କମ୍ପନ ଆସି ପୁଣି ସ୍ଥିର ହୋଇଗଲା। ଉଠି ଆସୁଥିବା ଆଖିପତା ପୁଣି ଖସି ପଡ଼ିଲା। ଗହଳି ଭିତରୁ କିଏ ଜଣେ ଫଗୁଆ ହାତକୁ ପାଣି ତାଳଟାଏ ବଢ଼ାଇ ଦେଲା। ଫଗୁଆ ସେ ପିଲାଟାର ମୁହଁକୁ ଦୁଇଚଳା ପାଣି ଛାଟିଦେଲା।

ପିଲାଟାର ଦେହଟା ଶୀତେଇ ଗଲା। ଲୋମ ଠିଆ ଠିଆ ହୋଇ ଗଲା। ଆଖି ଦୁଇଟି ଚାରି ଫଡ଼ା ହୋଇ ଫାଟିଗଲା। ପତା ଉଠାଇ ଅନାଇଲା ପିଲାଟି। ତା' ଛାତିଟାର ଉଠପଡ ବଢ଼ିଗଲା।

ଭିଡ଼ ଭିତରୁ କିଏ ଜଣେ କହିଲା—ତା' ପାଟିରେ ପାଣିତାଳଟା ମେଣ୍ଟେଇ ଦେ ଫଗୁଆ!

ତାଳଟା ପିଲାଟିର ମୁହଁରେ ଦେବା ଅସୁବିଧା ହେଲା। ହାତରେ ଚଳା ଚଳା ପାଣି ନେଇ ପିଲାଟିର ପାଟିରେ ପାଞ୍ଚ, ଛଅ ଚଳା ପାଣି ଢାଳିଲା ଫଗୁଆ। ପିଲାଟି କଷ୍ଟେମଷ୍ଟେ ଢୋକି ନେଲା। ଗହଳି ଭେଦ କରି ଆଗେଇ ଆସିଲା ନିବାରଣ। ତା ହାତରେ ଗିନେ ଚୁଡ଼ା ଚକଟା। ଗିନାଟା ପିଲାଟିର ମୁହଁ ପାଖରେ ଥୋଇ ଦେଇ କହିଲା—ଖାଆରେ ପିଲା, ଖାଇଦେ।

ଆନନ୍ଦ ଚନ୍ଦ୍ର ପତି

ପିଲାଟିର ଆଖି ଟିକେ ଚେଇଁ ଉଠିଲା। ତା ଡାହାଣ ହାତଟା କଡ଼ ମୋଡ଼ିଲା ଗିନା ପାଖକୁ ଆସିବାକୁ। କିନ୍ତୁ ଅସମର୍ଥ ହୋଇ ରହିଗଲା। ପିଲାଟିର ମୁହଁ, ଆଖି ଚୁଡ଼ା ଚକଟାକୁ ଡହଳ ବିକଳ ହୋଇ ଅନେଇଁଛି।

ଗହଳି ଭିତରୁ ଅନେକ କଣ୍ଠ ଚିତ୍କାର କଲା — ନିବାରଣ! ପିଲାଟି ନିଜେ ଖାଇ ପାରିବ ନାହିଁ। ତାକୁ ଖୋଇଦିଅ। ତା ପାଟିରେ ଚୁଡ଼ା ଚକଟା ଦିଅ।

ନିବାରଣ ବାଆଁ ହାତରେ ଗିନାଟିକୁ ଧରି ପ୍ରସ୍ତୁତ ହେଲା ପିଲାଟି ପାଟିରେ ଚୁଡ଼ା ଚକଟା ଦେବାକୁ। କିନ୍ତୁ ଗହଳି ଭିତରୁ ଗର୍ଜି ଉଠିଲା ଗିରିଜା! ଗିରିଜା ସାମଲ। ଗିରିଜା ବିରୋଧୀ ଦଳର ଜଣେ ରାଜନୈତିକ କର୍ମୀ। — ହୁସିଆର ନିବାରଣ! ସେ ପିଲାଟାକୁ କିଛି ଖୁଆନା କହୁଛି।

ରୁଣ୍ଡ ହୋଇଥିବା ସମସ୍ତ ଲୋକ ସ୍ତବ୍ଧ ହୋଇ ଗିରିଜାକୁ ଚାହିଁଲେ। ଅନାହାରକ୍ଲିଷ୍ଟ ପିଲାଟାକୁ କିଛି ଖାଇବାକୁ ଦେବାରେ କାହାର କିଛି ଆପତ୍ତି ଥାଇପାରେ ବୋଲି ରୁଣ୍ଡ ହୋଇଥିବା ଲୋକମାନଙ୍କ କଳ୍ପନା ବାହାରେ ଥିଲା। ସମସ୍ତେ ଚୁପ୍ ହୋଇଗଲେ।

ନିବାରଣ ମୁହଁ ଖୋଲିଲା — ପିଲାଟି ଭୋକରେ ଛଟପଟ ହେଉଛି, ଖାଇବାକୁ ଦେବାଟା କ'ଣ ମୋର ଦୋଷ ହୋଇଗଲା?

ଗିରିଜା ଧମକ ଦେବା ପରି ଉତ୍ତର ଦେଲା — ମୁଁ ନାହିଁ କରୁଚି। ତୁ ଦେଇ୍ ଦେଲୁ ଦେଖିବା।

ନିବାରଣ କିଛି ନ ବୁଝି ପାରି ସେଇଠି ସେମିତି ଠିଆ ହେଲା। ଗୋଟେ ହାତରେ ଚୁଡ଼ା ଗିନା, ଆର ହାତରେ ପିଲାଟି ମୁହଁରେ ଦେବା ପାଇଁ ଧରିଥିବା କିଛି ଚୁଡ଼ା ଚକଟା। ପିଲାଟି ଖାଇବାକୁ ଆଁ କରି ରହିଛି। ଗହଳି ଭିତରୁ ଲୋକମାନେ ପାଟିକଲେ — ନିବାରଣ! ଠିଆ ହେଲ କାହିଁକି? ପିଲାଟିର ପାଟିରେ ଚୁଡ଼ା ଚକଟା ଦିଅ। ଦେଖିବା ତମର କିଏ କ'ଣ କରିବ?

ନିବାରଣ କିଛି କହିବା ପୂର୍ବରୁ ବା କିଛି କରିବା ପୂର୍ବରୁ ଗିରିଜା କୁହାଟିଲା — ଯିଏ ସେ ପିଲା ପାଟିରେ କିଛି ଖୁଆଇବ ତାକୁ ଯଦି ମୁଁ ଛନ୍ଦୁରିକି ମାମୁ ଘରକୁ ନ ପଠେଇଛି, ମୋ ନାଆଁ ଗିରିଜା ସାମଲ ନୁହେଁ।

ନିବାରଣ ଏଥର ରୁଣ୍ଡ ହୋଇଥିବା ସମସ୍ତ ଲୋକଙ୍କ ଆଡ଼କୁ ଚାହିଁଲା। ସେ ଯେମିତି ପିଲାଟିକୁ ଖୁଆଇ ଦେବାପାଇଁ ସମବେତ ଲୋକଙ୍କର ସାହସ ମାଗୁଛି।

ଗିରିଜା ସମସ୍ତଙ୍କୁ ଶୁଣେଇ ଶୁଣେଇ କହିଲା — ଏ ପିଲାଟି ଅନାହାରରେ ମରିବ। ଆଜି ନ ହେଲେ କାଲି ମରିବ। ଏ ପିଲାଟିର ଏଇନେ ଖାଦ୍ୟଠାରୁ ଚିକିତ୍ସା ଅଧିକ ଦରକାର। ତାକୁ ଖାଦ୍ୟ ଦେଲେ ସିଏ ହଜମ କରିପାରିବ ନାହିଁ। ତା ପେଟରେ ଖାଦ୍ୟ ପଡ଼ିବା ମାତ୍ରେ ସେସବୁ ବାହାରି ଆସିବ। ତା ଅନାହାର

ସାଙ୍ଗକୁ ଝାଡ଼ା ବାନ୍ତି ମିଶିଯିବ। ସିଏ ନିଶ୍ଚୟ ମରିବ। ମୁଁ ପୋଲିସ୍‌ରେ ଖବର ଦେବି। ପୋଲିସ ତଦନ୍ତ କରିବ। ଯିଏ ଖାଇବାକୁ ଦେଇଥିବ ସିଏ ମର୍ଡର କେଶ୍‌ରେ ପଡ଼ିବ। ମାମୁ ଘରେ ପଶିବାକୁ ଯାହାର ଡ଼ର ନାହିଁ, ସିଏ ଖାଇବାକୁ ଦେଉ।

ପୋଲିସ, ମୃତ୍ୟୁ ଆଉ ମକଦ୍ଦମା କଥା ଶୁଣିବା ପରେ ରୁଣ୍ଡ ହୋଇଥିବା ଲୋକମାନଙ୍କ ପାଦ ପଛକୁ ପଛକୁ ପଡ଼ିଲା। ଅଳ୍ପ କେଇଟା ମିନିଟ୍ ପରେ ସେ ସ୍ଥାନଟା ଶୂନ୍‌ଶାନ୍ ହୋଇଗଲା। ନିବାରଣ ସେ ଗିନାଟା ତଳୁ ଉଠାଇବା ବେଳେ ଗିରିଜା ଫୁସ୍‌ଫୁସ୍ କଣ୍ଠରେ ବରଜା କାନରେ କ'ଣ କହୁଥିଲା।

ବରଜା ତା'ର ଡାହାଣ ହାତ। ଗିରିଜା ଯୁଆଡେ ପଠାଇବ ବରଜା ତାହାର କୁକୁର ପରି ସିଆଡେ ଝପଟି ଯିବ। ବରଜାଟା ଗୁଣ୍ଡା ଟୋକା। ପଇସା ଆଉ ମଦ ପାଇଁ ସିଏ ସବୁ କରିପାରେ।

ନିବାରଣ ସେ ସ୍ଥାନ ଛାଡ଼ି ଆସିବା ବେଳକୁ ଗିରିଜା ଆଉ ବରଜା ସେଇଠି ଏପଟ ସେପଟ ନସର ପସର ହେଉଥିଲେ। ନିବାରଣର ମନେ ହେଲା ଯେମିତି ଗିରିଜାଟା ଅନାହାର ମୃତ୍ୟୁ ପାଇଁ ଟାକି ବସିଛି। ପିଲାଟା ମରିଗଲେ ତା ଶବକୁ ନେଇ ବିରୋଧୀ ଦଳ ନେତାକୁ ଦେବ। ପିଲାଟାର ଫଟୋ ଉଠେଇ ଖବର କାଗଜବାଲାକୁ ବିକିବ। ଅନାହାର ମୃତ୍ୟୁଟେ ଗିରିଜା ହାତରେ ପଡ଼ିଲେ ସିଏ ସରକାରକୁ ହଲାପଟା କରିଦେବ।

ପିଲାଟାର କାକୁତିଆ ମୁହଁ ନିବାରଣ ମନକୁ ଦୋହଲାଇ ଦେଲା। ଏତେ ଲୋକଙ୍କ ଆଗରେ ପିଲାଟା ଏମିତି ଛଟପଟ ହୋଇ ମରିବ, ଆଉ ଗାଆଁର ଏତେ ଲୋକ ଏଇ ଗିରିଜା ଟାଉଟରକୁ ଡରି ଘରେ କବାଟ କିଳି ପଶିବେ! ପିଲାଟାର ଏମିତି ଅବସ୍ଥା ପାଇଁ ନିବାରଣର ମନ ଯେତିକି ଘାଣ୍ଟି ହେଲା, ତା'ଠୁ ବେଶି ଗୋଳେଇ ହେଲା ଗିରିଜାର ଧମକ ଯୋଗୁ। ଆମେ ଏତେ ଲୋକ, ଗୋଟେ ପିଲା ମୁହଁରେ ଚୁଡା ମଣ୍ଡଟେ ଦେବାର ସ୍ୱାଧୀନତା ଆମର ନାହିଁ! ଆମେ କାହାପ୍ରତି ସହାନୁଭୂତି ଦେଖାଇ ପାରିବୁ ନାହିଁ, କାହା ପ୍ରତି ଦୟା ଦେଖାଇ ପାରିବୁ ନାହିଁ। ଭୟ ଆମକୁ ଗୁରେଇ ତୁରେଇ ଛନ୍ଦରି ପକେଇଛି ଆମ ପାଟି, ହାତ, ପାଦ ଆଖି, କାନ!

ବିରୋଧୀ ଦଳରେ ଥାଇକି ଏତେ ଉତ୍ପାତ କରୁଛି ଗିରିଜା। ତାଙ୍କ ଦଳ ସରକାରରେ ଥିଲେ, ଏ ଶଳା ଗିରିଜା ହାତରେ ମୁଣ୍ଡ କାଟିଥାନ୍ତା। ଶଳା ମନେ ମନେ ହାଲୁଆ ଖାଉଛି, ଏ ଅନାହାର ମୃତ୍ୟୁଟାକୁ ହାତେଇ ସରକାରକୁ ଭାଙ୍ଗିବ। ତାଙ୍କ ଦଳ ସରକାର ଗଢ଼ିବ। ସିଏ ଏ ଅଞ୍ଚଳଟାକୁ ଥରହର କରିବ।

ନା, ଏ ଶଳା ଗିରିଜାର ଗଉଁ ନ ଭାଙ୍ଗିଲେ ହେବ ନାହିଁ। ପିଲାଟା ମରିଗଲା ପୂର୍ବରୁ ଆଗତୁରା ଯାଇ ଗିରିଜା ନାଆଁରେ ଥାନାରେ ଏତେଲା ଦେଲେ

କେମିତି ହୁଅନ୍ତା ? ଶଳାକୁ ନିଶ୍ଚୟ ମର୍ଡର କେଶ୍‌ରେ ପକାଇ କୋର୍ଟକୁ ଚାଲାଣ୍ କରିଦିଅନ୍ତା ପୋଲିସ୍। କିନ୍ତୁ ଗିରିଜାକୁ କେଶ୍‌ରେ ପକାଇବା ଯେତେ ସହଜ ନୁହଁ। ସବୁ ପୋଲିସ୍ ତା ହାତରେ। ଦୁଧ, ଭାତ, ମାଛ, ଶୁଖୁଆ ଦେଇ ବିଲେଇ ପୋଷିବା ପରି ଗିରିଜା ପୋଷିଛି ଏ ପୋଲିସ୍‌ଗୁଡ଼ାକୁ। ପ୍ରତି ଦିନ ମିଛ କେଶ୍ ଯୋଡ଼ି ହଳ ହଳକି ଥାନାକୁ ଅଡ଼େଇ ନଉଚି। ଡରେଇ ହଳେଇ ପଇସା ହକାଡ଼ି ନଉଚି ସେମାନଙ୍କଠୁଁ। ମାଛ, ଶୁଖୁଆ ପରି କଡ଼ମଡ଼ କି ଚୋବେଇ ଖାଉଚନ୍ତି ପୋଲିସବାଲାଏ ଏ ନିରୀହ ଲୋକଗୁଡାକୁ। ବିଲେଇକୁ ହାତକାମୁଡ଼ା ଶିଖଉଚି ଗିରିଜା।

ଗିରିଜାକୁ ପ୍ରାଣର ଭୟ ଆମ ଅଞ୍ଚଳ ଲୋକଙ୍କର। ତା' ବିରୋଧରେ ଏ ଅଞ୍ଚଳର କେହି ଲୋକ ସାକ୍ଷୀ ହେବେ ନାହିଁ। ପୋଲିସବାଲା ମଧ ଗିରିଜା ବିରୋଧରେ ଏତେଲା ରଖିବେ ନାହିଁ।

ନିବାରଣ ମୁଣ୍ଡକୁ ଆଉ ଗୋଟେ ବୁଦ୍ଧି ଢୁକିଗଲା ହଠାତ୍। ତୁରନ୍ତ କଥାଟା ଏମ୍.ଏଲ୍.ଏ.ଙ୍କ ଜରିଆରେ ମୁଖ୍ୟମନ୍ତ୍ରୀଙ୍କ କାନରେ ପକାଇଦେଲେ, ଏ ଗିରିଜାର ସବୁ ପ୍ଲାନ ଫସର ଫାଟି ଯାଆନ୍ତା। ମୁଖ୍ୟମନ୍ତ୍ରୀ ଗାଡ଼ି ପଠେଇ ପିଲାଟିକୁ ଭୁବନେଶ୍ୱର ନେଇଯାଆନ୍ତେ। ଅନାହାର ମୃତ୍ୟୁ ହୁଅନ୍ତା ଯେ ଗିରିଜା ହେଣ୍ଡି ମାରନ୍ତା ଫାଇଦା ଉଠାଇବାକୁ! ବାଉଁଶ ଥିଲେ ସିନା ବଇଁଶୀ ବାଜନ୍ତା!

ନିବାରଣ ମନେ ମନେ ଭାବିଲା, -ଏମିତି ଯେତେଟା ଅନାହାର ମୃତ୍ୟୁ ଯେଉଁଠି ଘଟୁଛି ଟିକେ ଚେଷ୍ଟା କଲେ ସେଠି ଅନାହାର ମୃତ୍ୟୁ ହୁଅନ୍ତା ନାହିଁ। ମଣିଷ ମରଣ ମୁହଁରୁ ବର୍ତ୍ତିଯାଆନ୍ତା, ସରକାର ଅନାସ୍ଥା ପ୍ରସ୍ତାବ ପଞ୍ଜାରୁ ରକ୍ଷା ପାଇଯାଆନ୍ତା। ଗୋଟେ ଫୋଡ ସିଲେଇ ମାରିଲେ ଯୋଉ କଥାକୁ ସମ୍ଭାଳି ହୁଅନ୍ତା ତାକୁ ନେଇ ଆସେମ୍ବ୍ଲିରେ, ଆସେମ୍ବ୍ଲି ବାହାରେ ସଭା ସମିତିରେ କି ଖବରକାଗଜରେ ଏତେ ହଲ୍ଲା ଗୁଲ୍ଲା, ହଟ ଚମଟ ସୃଷ୍ଟି ହୁଅନ୍ତା ନାହିଁ।

ନିବାରଣର କର୍ମୀପ୍ରାଣ ଚେଇଁ ଉଠିଲା। ସରକାରୀ ଦଳର ଜଣେ ଗ୍ରାମସ୍ତରୀୟ କର୍ମୀ ଭାବରେ ଗତ ଭୋଟ ବେଳେ ଏଇ ଗିରିଜା ସାଙ୍ଗରେ ତାର ଅନେକ ଥର ମୁହାଁମୁହିଁ ହୋଇଥିଲା। ସବୁଥର ଗିରିଜାକୁ ଡରି ବାଟ କାଟି ଚାଲିଯାଇଥିଲା ନିବାରଣ। କିନ୍ତୁ ଏଥର ସିଏ ଛାଡ଼ିବ ନାହିଁ। ଶଳା ମନେ ମନେ ଖୁସି ହୋଇ ବସିଥାଉ। ତା ମୁହଁରୁ ଶିକାରଟାକୁ ଛଡ଼ାଇନେଲେ ସିଏ ବୁଝିବ, ନିବାରଣକୁ ଚିହ୍ନିବ।

ଭୁବନେଶ୍ୱର ଉଦ୍ଦେଶ୍ୟରେ ବସ୍‌ରେ ଉଠିଲା ନିବାରଣ। ବସ୍ ଭିତରେ ନିବାରଣ ତିନିଟା କଥା ଭାବୁଥିଲା। ମରଣ ସହିତ ଲଢୁଥିବା ପିଲାଟାକୁ ବଞ୍ଚାଇଦେବ, ମୁଖ୍ୟମନ୍ତ୍ରୀ ଆଉ ସରକାରଙ୍କୁ ଅନାହାର ମୃତ୍ୟୁ ବଦନାମ୍‌ରୁ ରକ୍ଷା କରି ମୁଖ୍ୟମନ୍ତ୍ରୀଙ୍କର ପ୍ରିୟପାତ୍ର ହୋଇପାରିବ, ଆଉ ଶେଷ ତଥା ସବୁଠୁ ବଡ କଥା, ଗିରିଜାକୁ ଭାଣ୍ଡିଆ କରିବ।

ଆନନ୍ଦ ଚନ୍ଦ୍ର ପତି

ଗୋଟେ ଟେକାରେ ତିନି ତିନିଟା ଶିକାର କରିବା କଥା ଚିନ୍ତା କରୁ କରୁ ନିବାରଣ ପହଞ୍ଚିଲା ଏମ୍.ଏଲ୍.ଏ. ପ୍ରମଥବାବୁଙ୍କ କ୍ୱାଟର୍ସରେ। ପଚାରି ବୁଝିଲା, ଆଜି ରବିବାର। ଆସେମ୍ବ୍ଲି ବନ୍ଦ। କୋଣାର୍କରେ ନୃତ୍ୟୋତ୍ସବ ଚାଲିଛି। ସେଇଠିକି ଯାଇଛନ୍ତି। ଫେରୁ ଫେରୁ ଅନେକ ରାତି ହେବ।

ନିବାରଣ ଚାଲିଲା ମୁଖ୍ୟମନ୍ତ୍ରୀଙ୍କ ଘରକୁ। ମୁଖ୍ୟମନ୍ତ୍ରୀ ବି ଘରେ ନାହାଁନ୍ତି। ଯାଇଛନ୍ତି କ'ଣ ଗୋଟେ କାରଖାନାର ଶିଳାନ୍ୟାସ ପାଇଁ। ଫେରିବେ ଅନେକ ରାତିରେ। କେତେବେଳେ ଫେରିବେ କହିହେବ ନାହିଁ।

ନିବାରଣ ଚାଲିଲା ରାଜସ୍ୱ ମନ୍ତ୍ରୀଙ୍କ ପାଖକୁ। ତାଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ଭାରି ଭଲ ଲୋକ। ସଙ୍ଗେ ସଙ୍ଗେ କଥାଟା ରାଜସ୍ୱ ମନ୍ତ୍ରୀଙ୍କ ଦୃଷ୍ଟିକୁ ନେଲେ। ରାଜସ୍ୱମନ୍ତ୍ରୀ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ସହିତ ଟେଲିଫୋନ୍‌ରେ ଆଲୋଚନା କରି କହିଲେ—ନା, କିଛି କରି ହେବ ନାହିଁ। ବାଟରେ ଯଦି ପିଲାଟା ମରିଯାଏ ସେ ଦାୟିତ୍ୱ କିଏ ନେବ? ମୁଖ୍ୟମନ୍ତ୍ରୀ ନ ଫେରିଲେ ଏ ବିଷୟରେ କିଛି ନିଷ୍ପତ୍ତି ନେଇ ହେବ ନାହିଁ।

କଥାଟା ଯେତେ ସହଜ ବୋଲି ନିବାରଣ ଭାବୁଥିଲା, ସେଟା ସେତେ ସହଜ ନୁହେଁ ବୋଲି ତାର ଧାରଣା ଦୃଢ଼ ହେବାକୁ ଲାଗିଲା। ଅନ୍ୟ ଉପାୟ ନ ପାଇ ମୁଖ୍ୟମନ୍ତ୍ରୀଙ୍କ ବାସଭବନକୁ ଫେରି ଆସିଲା ନିବାରଣ। ତାଙ୍କ ବାସଭବନରୁ ଗହଳି କମି ଗଲାଣି। ପ୍ରାଇଭେଟ୍ ସେକ୍ରେଟାରୀ, ପି.ଏ. ଓ ଅନ୍ୟାନ୍ୟ ସମସ୍ତ କର୍ମଚାରୀ ଫେରି ଗଲେଣି। କେବଳ ରାତ୍ରି ଜଗୁଆଳି ଦୁଇଜଣ ଏପଟ, ସେପଟ ହେଉଛନ୍ତି। ପିଣ୍ଡାରେ ପଡ଼ିଥିବା ଖାଲି ବେଞ୍ଚରେ ବସିଲା ନିବାରଣ। ଦିନଯାକର କ୍ଳାନ୍ତି, ହତାଶାଭାବ ଓ ପରାଜୟର ଗ୍ଳାନିରେ ନିବାରଣ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ଯାଉଥିଲା। ମୁଖ୍ୟମନ୍ତ୍ରୀଙ୍କୁ ଅପେକ୍ଷା କରିବା ବ୍ୟତୀତ ତା ପାଖରେ ଆଉ କିଛି ଉପାୟ ନ ଥିଲା।

ବେଞ୍ଚରେ ବସୁ ବସୁ ନିବାରଣର ଆଖି ବନ୍ଦ ହୋଇଗଲା। ବନ୍ଦ ଆଖିରେ ନିବାରଣ ସ୍ୱପ୍ନ ଦେଖିଲା। ପିଲାଟା ଗାଁ ଦାଣ୍ଡରେ ଚାରିକାତ ମାଡ଼ି ପଡ଼ିଚି। ପାଖରେ କେହି କୁଆଡେ ନାହିଁ। ଗାଁ ଦାଣ୍ଡ ଶୁନ୍‌ଶାନ୍। ଖଣ୍ଡେ ଦୂରରେ ଗିରିଜା ଗୁଧ୍ରଟିଏ ପରି ଜଗି ବସିଛି ପିଲାଟିର ଦେହ ଶବ ପାଲଟିବା ଯାଏ। ପିଲାଟିକୁ ସାହାଯ୍ୟ କରିବା ପାଇଁ ଲମ୍ବି ଆସୁଥିବା ହାତମାନଙ୍କୁ ଗିରିଜା ଠେଙ୍ଗାରେ ପାହାରେ ଲେଖା ଦେଇ ଫେରାଇ ଦେଉଛି।

ହଠାତ୍ ପିଲାଟି ପାଟିରୁ ପୋଷେ ଲାଳ ବାହାରି ପଡ଼ିଲା। ତା ଦେହ ଭିତର ବାହାର ହେଉଥିବା ପବନଟା ବାହାର ପବନ ସାଙ୍ଗରେ ମିଶିଗଲା, ଆଉ

ସେ ପିଲାର ଦେହକୁ ଫେରିଲା ନାହିଁ। ପିଲାଟିର ଆଖି ଢ଼ିମା ଢ଼ିମା ହୋଇ ଉପର ପଟା ତଳକୁ ଖୋସି ହୋଇଗଲା। ପିଲାଟା ଶବ ପାଲଟି ଗଲା। ଗିରିଜା ଖୁସିରେ କୁହାଟ ଛାଡ଼ିଲା। ତା କୁହାଟ ଶୁଣି ତାର ଅନୁଗତ ଦଳେ ଟୋକା ପହଞ୍ଚିଲେ। ପିଲାଟାର ଶବ ପାଖରେ କିଛି କୁଣ୍ଡା ଆଉ ଶୁଖିଲା ନଡ଼ା ଥୋଇ ବିଭିନ୍ନ ଦିଗରୁ ପିଲାଟିର ଫଟୋ ନେଲେ। ଗୋଟିଏ ବାଉଁଶ ନିଶୁଣୀ ଉପରେ ପିଲାଟିକୁ ଶୁଆଇ ଶବ ଶୋଭାଯାତ୍ରା ଆରମ୍ଭ କଲେ। ବେଳକୁ ବେଳ ଶୋଭାଯାତ୍ରାରେ ଲୋକ ସଂଖ୍ୟା ବଢ଼ିଲା। ଶୋଭାଯାତ୍ରା ଲମ୍ବିଲା ଗାଆଁରୁ ରାଜଧାନୀ ପର୍ଯ୍ୟନ୍ତ। ଆଗରେ ସ୍ଲୋଗାନ ଦେଇ ଦେଇ ଚାଲିଛି ଗିରିଜା। ଅନ୍ୟମାନେ ତା ପଥରେ ପାଳି ଧରୁଛନ୍ତି। ସ୍ଲୋଗାନର ସ୍ୱର ଆକାଶ ଛୁଇଁଛି।

: ଅନାହାର ମୃତ୍ୟୁ—ହାଏ ହାଏ,

: ଅପାରଗ ସରକାର—ନାହିଁ ଆମର ଦରକାର।

: ଅନାହାରୀ କରେ ଚିତ୍କାର- ପେଟେ ତାର ନାହିଁ ଆହାର।

: ଅନାହାରୀ ମୁହେଁ ଆହାର ଦିଅ- ନ ହେଲେ ଗାଦି ଛାଡ଼ି ଦିଅ।

ଶୋଭାଯାତ୍ରା ଆଗେଇ ଆସିଲା ବିଧାନସଭା ଆଗକୁ। ଶୋଭା ଯାତ୍ରାକାରୀମାନେ ଖୁବ୍ ନାଚିଲେ, ଡେଇଁଲେ, ଚିତ୍କାର କଲେ-

: ଏ ଅପାରଗ ସରକାର—ନାହିଁ ଆମର ଦରକାର।

: ଅନାହାର ମୃତ୍ୟୁ—ହାଏ, ହାଏ, ହାଏ।

ବିଧାନ ସଭା ଭିତରେ ବିରୋଧୀ ଦଳର ଏମ୍.ଏଲ୍.ଏମାନେ ସରକାରୀ ଦଳର ଏମ୍.ଏଲ୍.ଏ.ମାନଙ୍କ ଆଡ଼କୁ ମାଡ଼ି ଆସିଲେ। ଅନାହାର ମୃତ୍ୟୁ ପାଇଁ ଦୁଇ ଦଳ ଭିତରେ ଚାଲିଲା ଧସ୍ତାଧସ୍ତି, ଟେବୁଲବାଡ଼ିଆ, ମାଇକ୍‌ଭଙ୍ଗା, ଯୋତାଫିଙ୍ଗା ଠେଲାପେଲା। କେତେ ଜଣ ବିରୋଧୀ ଦଳର ସଭ୍ୟ ମୁଖ୍ୟମନ୍ତ୍ରୀଙ୍କ ଆଡକୁ ଆଗେଇ ଗଲେ। ତାଙ୍କୁ ମାଡ଼ିବସି ତାଙ୍କ ମୁଣ୍ଡରୁ ମୁକୁଟଟାକୁ ଉତାରି ନେଇ ଭାଙ୍ଗି ଚିକ୍ ଚିକ୍ କରି ଦେଲେ। ଗୋଟିଏ ଚୌକି ତଳେ ମୁଖ୍ୟମନ୍ତ୍ରୀଙ୍କୁ ମାଡ଼ି ବସିଲେ।

ହଠାତ୍ ଚିତ୍କାର କରି ବେଞ୍ଚରୁ ତଳକୁ ଗଡ଼ିପଡ଼ିଲା ନିବାରଣ। ଚାରିକଡ଼କୁ ଚାହିଁଲା। ଚାରିଆଡ଼େ କେବଳ ଅନ୍ଧାର ଆଉ ଅନ୍ଧାର। ତା ଦେହଟା ଭୟ ଆଉ ଦୁଃଖରେ ଥରୁଥିଲା। ସ୍ୱପ୍ନଟା ତା ମନକୁ କୁଣ୍ଢେଇ ଧରିଥିଲା। ପିଲାଟା ହୁଏତ ରାସ୍ତା ଉପରେ ଶୀତ କାକରରେ ପଡ଼ି ପଡ଼ି ମରିଯାଇଥିବ। ଗିରିଜା ସେଇ ଶବଟାକୁ ଧରି ସରକାରଙ୍କୁ ହଲାପଟା କରିବାର ଯୋଜନା କରୁଥିବ।

ଗେଟ୍ ଆଗରେ ଗାଡ଼ି ରହିବାର ଶବ୍ଦ ହେଲା। ମୁଖ୍ୟମନ୍ତ୍ରୀ ଫେରିଲେ ବୋଧହୁଏ। ନିବାରଣ ଧାଇଁ ଯାଇ ଗେଟ୍ ଖୋଲିଲା। ମୁଖ୍ୟମନ୍ତ୍ରୀଙ୍କ ଗାଡ଼ି ପଶିଲା। ମୁଖ୍ୟମନ୍ତ୍ରୀ

ଗାଡ଼ିରୁ ଓହ୍ଲାଇବା ସଙ୍ଗେ ସଙ୍ଗେ ନିବାରଣ ତାଙ୍କୁ ଅନୁନୟ କଲା। ମୁଖ୍ୟମନ୍ତ୍ରୀ ହାତ ଘଣ୍ଟାକୁ ଚାହିଁ କହିଲେ– ରାତି ବାରଟା ହେଲାଣି। ଯାହା କହିବା କଥା କାଲି କହିବ।

ନିବାରଣ କିନ୍ତୁ କଥାଟା ଆଜି ତାଙ୍କ କାନରେ ପକାଇବା ପାଇଁ ଜିଦ୍ ଧରିଲା। ମୁଖ୍ୟମନ୍ତ୍ରୀ ଅନିଚ୍ଛା ସତ୍ତ୍ୱେ ତା କଥା ଶୁଣିଲେ। ସବୁକଥା ଶୁଣିସାରି ଠୋ ଠୋ ହୋଇ ହସିଲେ– ଆମ ରାଜ୍ୟ ଏକ ଗରିବ ରାଜ୍ୟ। ଅନାହାର ଆଉ ଅନାହାର ମୃତ୍ୟୁ ଏହାର ଚିର ସହଚର। ଏଥିପାଇଁ ଏତେ ବ୍ୟସ୍ତ ହେବାର କ'ଣ ଅଛି ?

ନିବାରଣ ଯୁକ୍ତି ବାଢ଼ିଲା—ନାଇଁ ସାର୍, ମୁଁ କ'ଣ କହୁଥିଲି କି; ଏଇ ଗିରିଜାଟା ମହା ବଦ୍‌ମାସ। ସିଏ ବିରୋଧୀ ଦଳର ଲୋକ। ମହା ଟାଉଟର। ସିଏ ତିଳକୁ ତାଳ କରିଦେବ। ବିରୋଧୀ ଦଳର ନେତାଙ୍କୁ ଡାକି ଶବ ଶୋଭାଯାତ୍ରା ବାହାର କରି ଆପଣଙ୍କ ସରକାରକୁ ବଦ୍‌ନାମ କରିଦେବ। ବିଧାନ ସଭାରେ ହଲାପଟା କରିବ।

ସେଥିପାଇଁ ତୁମେ ବ୍ୟସ୍ତ ହୁଅନା ନିବାରଣ! ବିଧାନ ସଭାରେ ପାଟିତୁଣ୍ଡ କରିବା ବିରୋଧୀ ଦଳର କାମ। ତାଙ୍କୁ କେମିତି ଜବତ କରିବାକୁ ହେବ ସେ କଥା ମୋତେ ଜଣା।

ନିବାରଣ ମୁଖ୍ୟମନ୍ତ୍ରୀଙ୍କୁ ବୁଝାଇବାକୁ ଚେଷ୍ଟା କଲା—ସେ ପିଲାଟାର ଅନାହାର ମୃତ୍ୟୁର ଫଟୋ ସବୁ ଖବର କାଗଜରେ ବାହାରିବ।

ମୁଖ୍ୟମନ୍ତ୍ରୀ ପୁଣି ଖୁବ୍ ଜୋର୍‌ରେ ହସିଲେ—ଖବର କାଗଜରେ ଫଟୋ ବାହାରି ପଡ଼ିଲେ ସେଟା ଅନାହାର ମୃତ୍ୟୁ ହୋଇଯିବ ନାହିଁ। ମୁଁ ଡାକ୍ତର ପଠାଇ ପୋଷ୍ଟମର୍ଟମ୍ ରିପୋର୍ଟ କରାଇଦେବି। କିଛି ଗୋଟେ ଅଚିହ୍ନା ରୋଗରେ ପିଲାଟା ମରିଛି ବୋଲି ଡାକ୍ତର ରିପୋର୍ଟ ଦେବ। ବିରୋଧୀ ଦଳର ଆଉ ଖବରକାଗଜବାଲାଙ୍କ ପାଟି ଚୁପ୍ ହୋଇଯିବ।

ବିରୋଧୀ ଦଳର ଆନ୍ଦୋଳନ, ସଭା, ଶୋଭାଯାତ୍ରା ରୋକିବାକୁ ମୋ ହାତରେ ପୋଲିସ ଅଛି। ମୁଁ ସବୁ ଜବତ୍ କରିଦେବି। ଏମିତି ଅନାହାର ମୃତ୍ୟୁର ଅଭିଯୋଗ ଆମ ସରକାର ବିରୋଧରେ ନୂଆ ହୋଇପାରେ, କିନ୍ତୁ ଆଗରୁ ବହୁ ସରକାରଙ୍କ ବିରୋଧରେ ଏମିତି ଅନେକ ଅନାହାର ମୃତ୍ୟୁର ଅଭିଯୋଗ ଆସିଛି ଏବଂ ସେସବୁ ଅଭିଯୋଗର ତଣ୍ଡିକୁ ଚିପି ବନ୍ଦ୍ କରି ଦିଆଯାଇଛି। ଯେ କୌଣସି ସରକାର ପାଇଁ ଅନାହାର ମୃତ୍ୟୁ କିଛି ନୂଆ ନୁହେଁ।

ନିବାରଣ ମୁଖ୍ୟମନ୍ତ୍ରୀଙ୍କୁ ବୁଝାଇବାର ଶେଷ ଚେଷ୍ଟା କଲା—ନାଇଁ ସାର୍, ମୁଁ କହୁଥିଲି ସାର୍! ପିଲାଟାକୁ ଡାକ୍ତରଖାନାକୁ ନେଇ ଆସି ତାର ଚିକିତ୍ସାର

ବ୍ୟବସ୍ଥା କରି ତାକୁ ମୁଠେ ଖାଇବାକୁ ଦେଲେ ପିଲାଟା ବଞ୍ଚି ଯାଆନ୍ତା। ଅନାହାର ମୃତ୍ୟୁର ଅଭିଯୋଗ ଆଣିବାର ସୁଯୋଗ ପାଆନ୍ତେ ନାହିଁ ବିରୋଧୀ ଦଳର ଲୋକମାନେ। ସେ ଟାଉଟର ଗିରିଜାର ମୁହଁ ବନ୍ଦ ହୋଇ ଯାଆନ୍ତା।

ତୁମେ ରାଜନୀତି କଥା କିଛି ଜାଣିନା ନିବାରଣ। ରାଜ୍ୟରେ କିଛି ସମସ୍ୟା ସୃଷ୍ଟି ନ ହେଲେ ଜଣେ ମୁଖ୍ୟମନ୍ତ୍ରୀ ପ୍ରଶଂସିତ ହୁଏ ନାହିଁ। ସମସ୍ୟାକୁ ଦକ୍ଷତାର ସହିତ ନିୟନ୍ତ୍ରଣ କରିବାରେ ମୁଖ୍ୟମନ୍ତ୍ରୀଙ୍କର ଦକ୍ଷତାର ପ୍ରମାଣ ମିଳେ। ତା ଛଡ଼ା ମୁଁ ଯଦି ଏମିତି ଅନାହାରକ୍ଲିଷ୍ଟମାନଙ୍କୁ ଆଣି ତାଙ୍କର ଚିକିତ୍ସା ଓ ଖାଦ୍ୟପେୟର ବ୍ୟବସ୍ଥା କରେ ତା ହେଲେ ଆମ ରାଜ୍ୟ ପରି ଏକ ଦରିଦ୍ର ରାଜ୍ୟରେ ପ୍ରତିଦିନ ଏମିତି ହଜାର ହଜାର ଅନାହାରକ୍ଲିଷ୍ଟ ମଣିଷର ପଟୁଆର ମୋ ଦୁଆରେ ପହଞ୍ଚିବ। ସେମାନଙ୍କ ଥଇଥାନ କାମରେ ହାତ ଦେଲେ ଆଉ କିଛି କରିବାକୁ ଏ ହାତକୁ ତର ମିଳିବ ନାହିଁ। ଏ ରାଜ୍ୟର ଅନ୍ୟ କୌଣସି ବିକାଶମୂଳକ କାର୍ଯ୍ୟ ପାଇଁ ସମ୍ବଳ ଅଣ୍ଟିବ ନାହିଁ।

ନିବାରଣ ଆଉ କିଛି କହିବା ପୂର୍ବରୁ ମୁଖ୍ୟମନ୍ତ୍ରୀ ଶୋଇବାକୁ ଚାଲିଗଲେ। ସେଇ ଅନ୍ଧକାର ଭିତରେ ଅନେକ ସମୟ ପର୍ଯ୍ୟନ୍ତ ନିବାରଣ ଠିଆ ହୋଇ ରହିଲା। ମୁଖ୍ୟମନ୍ତ୍ରୀଙ୍କ କଥା ତା ଭିତରକୁ କଣା କରି ପଶିଚାଲିଲା। ତା ମନ ଭିତରେ ଅନେକ ଓଲଟ ପାଲଟ୍। ବାହାରେ ରାତି ଗର୍ଜୁଛି। ସମୁଦାୟ ରାଜଧାନୀ ଶୋଇଛି ଗଭୀର ନିଦରେ। ବେଞ୍ଚ ଉପରେ ଶୋଇବାକୁ ଗଲା ନିବାରଣ। ଅନାହାର ମୃତ୍ୟୁ ସଂପର୍କରେ ଥିବା ତାର ସମସ୍ତ ଧାରଣା ବଦଳିଗଲା ତା ବନ୍ଦ ଆଖିକୁ ନିଦ ନ ଆସି ପଶି ଆସୁଛି ସେଇ ପିଲାଟିର କାନ୍ଦୁରା ମୁହଁ, ଗିରିଜାର କିମ୍ଭୂତକିମାକାର ମୁହଁ ଓ ମୁଖ୍ୟମନ୍ତ୍ରୀଙ୍କ ଅଟ୍ଟହାସ। ନିବାରଣର ନିଦୁଆ ନିଦୁଆ ଆଖି ଭିତରକୁ ପୁଣି ଓହ୍ଲାଇ ଆସିଲା ସପନ। ସପନରେ ପୁଣି ସେଇ ଶବ ଶୋଭାଯାତ୍ରା। ପିଲାଟିର ଶବକୁ କାନ୍ଧେଇ ଶୋଭାଯାତ୍ରାକାରୀମାନେ ଚିତ୍କାର କରୁଥିଲେ—

: ଅନାହାର ମୃତ୍ୟୁ—ହାଏ, ହାଏ।

: ଅନାହାରୀ କରେ ଚିତ୍କାର—ହେ ସରକାର ହୁଅ ହୁସିଆର।

ହଠାତ୍ ସରକାରୀ ଦଳର ସମସ୍ତ ଏମ୍.ଏଲ୍.ଏ.ଙ୍କ ସହିତ ମୁଖ୍ୟମନ୍ତ୍ରୀ ଓ ଅନ୍ୟାନ୍ୟ ସବୁ ମନ୍ତ୍ରୀ ବିଧାନସଭା ଭିତରୁ ବାହାରି ଶୋଭାଯାତ୍ରା ଆଡ଼କୁ ଆଗେଇ ଆସିଲେ। ସେମାନଙ୍କ ମୁଣ୍ଡ ଆକାଶକୁ ଛୁଇଁଥିଲା। ଆଖିଗୁଡ଼ାକ କୋଣାର୍କ ଚକ ପରି ବଡ଼ ବଡ଼ ଦିଶୁଥିଲା। ହାତ ଆଉ ପାଦର ଆଙ୍ଗୁଠିରେ ବିଶାଳ ବିଶାଳ ଧାରୁଆ ନଖ। ସେମାନଙ୍କ ମୁହଁ ଅସୁର ମୁହଁ ପରି ବିକଟାଳ ଓ ଭୟଙ୍କର ଦିଶୁଥିଲା।

ଏମାନେ ସମସ୍ତେ ସେଇ ପିଲାଟିର ଶବଟିକୁ ଶୋଭାଯାତ୍ରାରୁ ଝାମ୍ପି ନେଲେ। ଶବଟିକୁ ଟିକି ଟିକି କରି କାଟି ଖଣ୍ଡ ଖଣ୍ଡ ମାଂସ ପ୍ରତ୍ୟେକ ମନ୍ତ୍ରୀ ଓ ଏମ୍.ଏଲ୍.ଏ. ନିଜ ନିଜ ଲମ୍ବା ପଞ୍ଜାବି ପକେଟ୍‌ରେ ପୂରାଇ ଫେରିଗଲେ।

ପଟୁଆରରେ ଆସିଥିବା ସମସ୍ତ ଲୋକ ଛତ୍ରଭଙ୍ଗ ଦେଇ କିଏ କୁଆଡେ ଚାଲିଯାଇଥିଲେ। ଶବ ନାହିଁ କି ଶୋଭାଯାତ୍ରା ନାହିଁ। ଶବଟା ଟୁକୁରା ଟୁକୁରା ମାଂସ ହୋଇ ପ୍ରତ୍ୟେକ ଏମ୍.ଏଲ୍.ଏ. ଓ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀଙ୍କ ପକେଟ୍ ଭିତରେ ପଶି ଚାଲିଯାଇଛି।

ଗିରିଜା ଆଗରେ ପଡ଼ିଛି କେବଳ ବାଉଁଶ ନିଶୁଣୀଟା, ଯେଉଁଥିରେ ପିଲାଟାର ଶବ ବୁହାହୋଇ ଆସିଥିଲା।

ଏକଲା ଗିରିଜା ଭକୁଆ, ଭେଲକା ହୋଇ ଠିଆ ହୋଇଛି।



# ଅବକ୍ଷୟ

ଭୁବନେଶ୍ୱର ଏରୋଡ୍ରମ୍‌ରେ ଓହ୍ଲାଇ ଗାଆଁକୁ ଟ୍ରେନ୍ ଧରିଲେ ପ୍ରଫେସର ସୁନିଲ ମହାପାତ୍ର ଆଉ ତାଙ୍କ ସ୍ତ୍ରୀ ନୀଳିମା। ରେଲ ଡବାର ଝର୍କାରୁ ବିଭିନ୍ନ ପାହାଡ, ପର୍ବତ, ଧାନବିଲ ଆଉ ଗାଆଁକୁ ପ୍ରଫେସର ମହାପାତ୍ର ଚିହ୍ନେଇ ଦେଉଥିଲେ ନିଜ ସ୍ତ୍ରୀଙ୍କୁ। କଲେଜ ଲାଇଫ୍‌ରେ ଏଇ ଟ୍ରେନ୍‌ରେ ବସି, ଏଇ ପାହାଡ଼, ପର୍ବତ ଗାଆଁ, ଧାନବିଲ ଦେଇ ସିଏ ଅନେକ ବାର ଗାଆଁରୁ କଟକ ଓ କଟକରୁ ଗାଆଁ ଯାଇଛନ୍ତି। ଥରେ ହେଲେ ବି ପ୍ରଫେସରଙ୍କ ଗାଆଁ ଦେଖି ନଥିବା ନୀଳିମା ଦେବୀ ଅଚିହ୍ନା ଆଖି ନେଇ ଅନେକ ଆଗ୍ରହର ସହିତ ସେସବୁ ଦେଖୁ ଦେଖୁ ଗଡ଼ମଧୁପୁର ଷ୍ଟେସନରେ ଗାଡ଼ି ଅଟକିଲା।

ପ୍ରଫେସର୍ ମହାପାତ୍ର ଆଉ ନୀଳିମା ଦେବୀ ଟ୍ରେନ୍‌ରୁ ଓହ୍ଲାଇ ପ୍ଲାଟଫର୍ମକୁ ଆସିଲେ। ତିରିଶବର୍ଷ ହେଲା ଗାଆଁ ଛାଡ଼ି ଆମେରିକାରେ ରହିଥିବା ପ୍ରଫେସର ମହାପାତ୍ର ଗଡ଼ମଧୁପୁର ଷ୍ଟେସନଟା ମୋଟେ ଚିହ୍ନିପାରିଲେ ନାହିଁ। ଅନେକ ବଦଳି ଯାଇଛି। ତାଙ୍କ ସମୟରେ ଏଇ ଗଡ଼ମଧୁପୁର ଷ୍ଟେସନ ଥିଲା ଅଣ୍ଡିଆ ଗାଆଁ ପାଖରେ, ଏବେ କିନ୍ତୁ ଷ୍ଟେସନଟା ଉଠି ଆସିଛି ଗଡ଼ମଧୁପୁର ପାଖକୁ। ମହାପାତ୍ରଙ୍କ ଗାଆଁ ଆଡକୁ ଚାରି/ପାଞ୍ଚ କିଲୋମିଟର ନିକଟେଇ ଆସିଛି ଷ୍ଟେସନଟା।

ଷ୍ଟେସନ୍ ପାଖରୁ ଗୋଟିଏ ରିକ୍ସାରେ ବାକ୍ସ, ବ୍ରିଫକେଶ୍, ବେଡ଼ିଙ୍ଗ ଥୋଇ ଆଉ ଗୋଟିଏ ରିକ୍ସାରେ ଉଠିଲେ ସ୍ୱାମୀ, ସ୍ତ୍ରୀ। ଗଡ଼ମଧୁପୁରରୁ ମହାପାତ୍ରଙ୍କ ଗାଆଁ ଆଡକୁ ଲମ୍ବିଥିବା ଅଣଓସାରିଆ ପିଚୁ ରାସ୍ତାଟି ଆଗରୁ ନାଲି ସଡ଼କଟିଏ ଥିଲା। ସଡ଼କର ଦୁଇ କଡ଼ରେ ଧାଡ଼ି ଧାଡ଼ି ଆମ୍ବ, ଜାମୁ, ନିମ୍ବଗଛ ଲମ୍ବିଥିଲା ଗଡ଼ମଧୁପୁରରୁ ମହାପାତ୍ରଙ୍କ ଗାଆଁଯାଏ। କିନ୍ତୁ ଏବେ ଗୋଟିଏ ହେଲେ ଗଛ ଦିଶୁନାହିଁ ରାସ୍ତାକଡ଼ରେ।

ରିକ୍ସାରେ ଗୋଟେ କିଲୋମିଟର ଗଲାପରେ ସେଇ ରାସ୍ତାର ଡାହାଣ କଡ଼ରେ ଗଙ୍ଗେଇମାଆ ପାହାଡ଼ ପଡ଼ିଲା। ପ୍ରଫେସର ମହାପାତ୍ର ରିକ୍ସା ଦୁଇଟାକୁ ରାସ୍ତା

ଆନନ୍ଦ ଚନ୍ଦ୍ର ପଢ଼ି

ଉପରେ ଅଟକାଇ ରିକ୍ସାରୁ ତଳକୁ ଓହ୍ଲାଇଲେ। ନୀଳିମା ଦେବୀଙ୍କୁ ସାଙ୍ଗରେ ଧରି ଗଙ୍ଗେଇମାଆ ପାହାଡ଼ ଆଡ଼କୁ ଗଲେ।

ନୀଳିମା ବୁଝିପାରୁ ନଥିଲେ ଏ ନଣ୍ଡା ଖଣ୍ଡିଆ ପାହାଡଟା ଆଡକୁ ଯାଇ ଲାଭ କ'ଣ? ପ୍ରଫେସର ମହାପାତ୍ର ନୀଳିମାଙ୍କୁ ବୁଝାଇଲେ—ଏଇ ପାହାଡଟାର ଅଦ୍ଭୁତ ଶକ୍ତି ଅଛି। ଏଇ ପାହାଡ଼ ତଳେ ଠିଆ ହୋଇ ଯିଏ ବଡ଼ ପାଟିରେ ଯାହା କହିବ ଏ ପାହାଡ଼ ତାକୁ ସେଇଆ କହିବ।

ପ୍ରଫେସର ବଡ଼ ପାଟିରେ ନିଜ ନାଆଁ କହିଲେ। ନିଜ ନାଆଁ ଧରି ଡ଼ାକ ମାରିଲେ। କିନ୍ତୁ ପାହାଡ଼ କିଛି କହିଲା ନାହିଁ। ପାହାଡର ଦୁଇ ତୃତୀୟାଂଶ ଭଙ୍ଗା ସରିଲାଣି। ଏଇ ପାହାଡ଼ର ପଥର ଡିନାମାଇଟ୍ ଲଗାଇ ଫଟାଇ ଟ୍ରକରେ ବୁହା ଚାଲିଛି ଆଜିକି ପନ୍ଦର କୋଡ଼ିଏ ବର୍ଷ ହେଲା।

ରାସ୍ତା ଉପରୁ ରିକ୍ସାବାଲା ଦୁଇଜଣ ବଡ ପାଟିରେ ଡାକ ଛାଡ଼ିଲେ—ପାହାଡ଼ରେ ଡ଼ିନାମାଇଟ୍ ଲାଗିଚି ବାବୁ, ପଳେଇ ଆସ, ପଳେଇ ଆସ।

ପ୍ରଫେସର ମହାପାତ୍ର ଆଉ ତାଙ୍କ ସ୍ତ୍ରୀ ନୀଳିମା ଜୀବନ ବିକଳରେ ପାହାଡ଼କୁ ପଛ କରି ରିକ୍ସା ଆଡ଼କୁ ଧାଇଁଲେ। ରିକ୍ସା ପାଖରେ ପହଞ୍ଚୁ ନାହାନ୍ତି ଡ଼ିନାମାଇଟ୍ ଫୁଟିଲା। ବୋମା ଫୁଟିବା ପରି ଗୋଟେ ଭୟଙ୍କର ଶବ୍ଦ ହେଲା। ବଡ଼ ବଡ଼ ପଥରଖଣ୍ଡ ଏଣେ ତେଣେ ବିଛାଡ଼ି ହୋଇ ପଡ଼ିଲା।

ପ୍ରଫେସର ମହାପାତ୍ର ଆଉ ନୀଳିମା କିନ୍ତୁ ରକ୍ଷା ପାଇଗଲେ। ତାଙ୍କଠି ପଥର ବାଜି ନାହିଁ। ଦୁହେଁ ଆସି ରିକ୍ସାରେ ବସିଲେ। ଦୁହେଁ କିଛି ସମୟ ଥରି ଥିଲେ।

ପ୍ରଫେସର ମହାପାତ୍ରଙ୍କ ଗାଆଁ ମୁଣ୍ଡରେ ରିକ୍ସା ଅଟକିଲା। ଗାଆଁ ମୁଣ୍ଡ ଯାଉଁଳି ପୋଖରୀ ପାଖରେ ରିକ୍ସାରୁ ଦୁହେଁ ଓହ୍ଲାଇ ଗଲେ। ପୋଖରୀକୁ ଦେଖି ମହାପାତ୍ରଙ୍କ ଆଖି ବିସ୍ମୟରେ ବଡ଼ ବଡ଼ ହୋଇଗଲା। ଏ ପୋଖରୀର ଅବସ୍ଥା କ'ଣ ଏମିତି ହୋଇଛି! ଦୁଇଟାଯାକ ପୋଖରୀର ହୁଡ଼ା ଭାଙ୍ଗି ଗଲାଣି। ପାଣି ତଳି ଧରିଛି। ପୋଖରୀରେ ପାଣି ଯେତିକି ପଙ୍କ ତାଠୁ ବେଶୀ। ପାଣିର ରଙ୍ଗ ନେଳିଆ ଧରିଯାଇଛି। ପାଣି ଉପରେ ଚାରି ଆଙ୍ଗୁଳ ବହଳର ଦଳ। ନଇଁ ପଡ଼ି ପୋଖରୀରୁ ପାଣି ଆଞ୍ଜୁଳାଏ ଉଠାଇ ଆଣିଲେ ସୁନିଲ। ପାଣିରେ ମୋଟା ମୋଟା ପୋକ ସାଲୁବାଲୁ। ଯେଉଁ ପୋଖରୀ ସକାଳୁ ସଂଜ ଯାଏ ଲୋକ ଗହଳିରେ ଫାଟି ପଡୁଥିଲା, ସେଠି କେହି ଜଣେ ହେଲେ ନାହିଁ।

ନୀଳିମା ତାଙ୍କ ସ୍ୱାମୀଙ୍କ ମୁହଁକୁ ଚାହିଁ ପଚାରିଲେ— କ'ଣ ଏମିତି ଆଶ୍ଚର୍ଯ୍ୟ ଆଶ୍ଚର୍ଯ୍ୟ ମୁହଁ କରୁଚ? ଏଟା ତୁମ ଗାଆଁ ନୁହଁକି?

ପ୍ରଫେସର ମହାପାତ୍ର କିଛି ଉତ୍ତର ନ ଦେଇ ନୀଳିମା ଦେବୀଙ୍କୁ ଧରି ଚାଲିଲେ ମଙ୍ଗଳାଶାଳ ଆଡେ। ଗ୍ରାଆଁ ଭିତରେ ପଶିବା ଆଗରୁ ଗାଆଁ ମଙ୍ଗଳାଙ୍କୁ

ଆନନ୍ଦ ଚନ୍ଦ୍ର ପତି

ଓଳଗି ହେବାଟା ବିଧି। ମଙ୍ଗଳାଶାଳ ବରଗଛ ତାଙ୍କ ସ୍ମୃତିରେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ। ସହସ୍ର ଓହଳ ବିଶିଷ୍ଟ ବରଗଛ ମୂଳେ ଥିଲା ପୋଡା ମାଟିରେ ତିଆରି ଅନେକ ଘୋଡ଼ା। ସେଇ ଘୋଡ଼ାଙ୍କ ମେଳରେ ଥିଲା ମଙ୍ଗଳାଙ୍କର କଳା ମୁଗୁନି ପଥର ମୂର୍ତ୍ତି। ପ୍ରତି ସଂକ୍ରାନ୍ତିରେ ମଙ୍ଗଳା ମାଜଣା ହେଉଥିଲେ। ବର୍ଷରେ ଥରେ, ଦୁଇଥର ମଙ୍ଗଳା ପୂଜକଙ୍କଠାରେ କାଳିସୀ ଆସୁଥିଲା। ଭୋଗରାଗ, ଶଙ୍ଖ, ଘଣ୍ଟା କୀର୍ତ୍ତନରେ ଗାଆଁ ଉଚ୍ଛୁଳୁ ଥିଲା।

କିନ୍ତୁ ସେ ମଙ୍ଗଳାଶାଳ କାହିଁ? ସେଇ ସ୍ଥାନରେ ଠିଆ ହୋଇଛି କ୍ଳବ ଘର। କ୍ଳବ ଘରୁ ରେଡ଼ିଓରୁ କି ଟେପ୍‌ରେକର୍ଡ଼ରୁ ଆଧୁନିକ ହିନ୍ଦୀ ସିନେମାର ଅଶ୍ଳୀଳ ଗୀତ ଶୁଭୁଥିଲା। ପ୍ରଫେସର ମହାପାତ୍ର ପଚାରି ବୁଝିଲେ, ମଙ୍ଗଳାଙ୍କ ମୂର୍ତ୍ତିଟା ମୂର୍ତ୍ତିଚୋର ନେଇ ବିଦେଶ ଚାଲାଣ କରିଦେଲା। ମାଟି ଘୋଡ଼ାଗୁଡ଼ାକ ପିଲାମାନେ ଭାଙ୍ଗିଦେଲେ। ବରଗଛଟାକୁ କ୍ଳବପିଲା କାଟି ବିକ୍ରି କରି ଦେଲେ। ମଙ୍ଗଳାଶାଳ ତଳିରେ କ୍ଳବ ତିଆରି ହେଇଚି।

ପ୍ରଫେସର ଦମ୍ପତି ସେଇ କ୍ଳବ ଆଗରେ ଠିଆ ହୋଇ ମଙ୍ଗଳାଙ୍କ ଉଦ୍ଦେଶ୍ୟରେ ଉଠିଥିବା ହାତକୁ ମୁଣ୍ଡରେ ଛୁଆଁଇ ଗାଆଁ ଭିତରକୁ ପଶିଲେ। ତାଙ୍କ ପଛରେ ଦଳେ ଅଳ୍ପ ବୟସର ପିଲା। ଗାଆଁ ଦାଣ୍ଡେ ଦାଣ୍ଡେ ପ୍ରଫେସର ଦମ୍ପତି ଚାଲିଥାନ୍ତି। ପିଣ୍ଡା ଉପରୁ ଝରକା ଫାଙ୍କରୁ ଗାଆଁର ଲୋକମାନେ ତାଙ୍କୁ ଅଚିହ୍ନା ଅଚିହ୍ନା ଆଖିରେ ଅନେଇ ଥାନ୍ତି।

ପ୍ରଫେସର ସୁନିଲ ମହାପାତ୍ର ଏଇ ଗାଆଁର ମଣିଷ ହୋଇ ମଧ୍ୟ କାହାକୁ ଚିହ୍ନିପାରୁ ନାହାଁନ୍ତି। ତାଙ୍କ ସମୟର ମଣିଷ କେହି ତାଙ୍କ ଆଖିରେ ପଡୁ ନାହାଁନ୍ତି। ସିଏ ଦେଖିଥିବା ଲୋକମାନଙ୍କର ଜନ୍ମ ହୁଏତ ସିଏ ଆମେରିକା ଯିବା ପରେ! ଅଳ୍ପ କେଇଟି ତାଙ୍କ ବେଳର ବୟସ୍କ ମୁହଁ ତାଙ୍କ ଆଖିରେ ପଡ଼ିଲା। ସେମାନଙ୍କର ନାଆଁ ମନେ ପକାଇ ପାରୁ ନଥିଲେ ପ୍ରଫେସର। ସେମାନେ ବି କେବଳ ଚିହ୍ନିଲା ଚିହ୍ନିଲା ଆଖିରେ ନୂଆ ମଣିଷ ଦେଖିବା ପରି ତାଙ୍କୁ ଚାହୁଁଥିଲେ।

ନିଜ ଘରକୁ ଚିହ୍ନିବା ପାଇଁ ଦାଣ୍ଡର ଦୁଇ ପଟର ଘରକୁ ଦେଖି ଦେଖି ଚାଲିଥିଲେ ପ୍ରଫେସର। ନିଜ ଘରର ଚିତ୍ର ତାଙ୍କ ମନରେ ଆଙ୍କି ହୋଇ ଯାଉଥିଲା। ଘର ଭିତରେ ମାଆ ରୋଷେଇ କରୁଥିଲେ, ବେସର ବାଟୁଥିଲେ, ବାପା ଡ଼ିବି ଆଲୁଅରେ ବସି ଭାଗବତ ପଢୁଥିଲେ। ସେଇ ଘରର ପ୍ରତି ଇଟରେ ତାଙ୍କ ପିଲାଦିନର ସ୍ମୃତି ଓ ଇତିହାସ ଲିଖିତ। ଗାଆଁଟା ସରିବାକୁ ବସିଲାଣି; କିନ୍ତୁ ତାଙ୍କ ଘର କାହିଁ? ନିଜ ଉପରେ ବିରକ୍ତ ହେଲେ ପ୍ରଫେସର। ଆମେରିକାରେ ତିରିଶଟା ବର୍ଷ କଟାଇ ଆସିବା ପରେ କେହି କ'ଣ ନିଜ ଘରକୁ ଚିହ୍ନିପାରେ ନାହିଁ? ନିଜ ଉପରେ ବିରକ୍ତ ହେଲେ ପ୍ରଫେସର। ନିଜ ଘର ଚିହ୍ନିବା ପାଇଁ ଅନ୍ୟ କାହାର

ସାହାଯ୍ୟ ନେବା ପ୍ରସ୍ତାବଟା ମନରୁ ସଂପୂର୍ଣ୍ଣ ନିର୍ବାସିତ କରି ଦେଇଥିଲେ ସିଏ। ନିଜ ଘର ନିଜେ ନ ଚିହ୍ନି ପାରିବା ଲଜ୍ଜାର କଥା।

ତାଙ୍କ ଘରଟା ଗାଆଁର ଶେଷ ଆଡକୁ ଥିଲା। ଏବେ ହୁଏତ ଆହୁରି ଅନେକ ଲମ୍ବିଯାଇଛି ଗାଆଁଟା। ତାଙ୍କ ଘରଟା ଆଉ ଶେଷ ମୁଣ୍ଡରେ ନ ଥାଇ କିଛିଟା ଭିତରକୁ ଆସି ଯାଇଥିବ। ଆଉ ଥରେ ନିରେଖି ନିରେଖି ନିଜ ଘରଟାକୁ ଚିହ୍ନି ବାହାର କରିବାକୁ ଚେଷ୍ଟା କଲେ ସୁନିଲ ମହାପାତ୍ର। ଏଇଟା ପଥରବନ୍ଧା କୂଅ। ଏଇ କୂଅ ମୂଳେ ଗୋଟେ ସିମେଣ୍ଟ ଚଟାଣ ଥିଲା। ଚଟାଣ ସେଇଠି ଅଛି କିନ୍ତୁ ସିମେଣ୍ଟ ଛାଡ଼ି ଯାଇଛି। ଯୋଡ଼ା ହୋଇ ଚଟାଣ ହୋଇଥିବା ମାଙ୍କଡ଼ା ପଥର ଚାରିଟା ସିମେଣ୍ଟ ଫାଶରୁ ହୁଗୁଳି ଅଲଗା ଅଲଗା ପଡ଼ିଚି। ଏଇ ଚଟାଣ ପାଖରେ ଥିବା ନଡିଆ ଗଛଟା କିଏ ହାଣି ନେଇଛି। ଏଇଠି କୋଉଠି ତାଙ୍କ ଘର। ତାଙ୍କ ଘର ଆଗରେ ପିଣ୍ଡା ତଳକୁ ଗୋଟେ ଲମ୍ୱା ପଥର କୁଣ୍ଡ ଥିଲା। ସେଥିରେ ଗୋରୁଙ୍କୁ କୁଣ୍ଡାପାଣି ଖାଇବାକୁ ଦିଆ ଯାଉଥିଲା। ହଁ ପଥର କୁଣ୍ଡଟା ଏଇ ଘର ପିଣ୍ଡାତଳକୁ ସେମିତି ଅଛି। ସେଥିରେ ମାଟି ପଶି କିଛିଟା ପୋତି ହୋଇ ଯାଇଛି।

ସେଇ ମାଟି ଘରର ପିଣ୍ଡା ଉପରକୁ ଉଠିଲେ ସୁନିଲ ମହାପାତ୍ର। କାନ୍ଥଟା ମାଟିର ଅଛି ଆଗପରି; କିନ୍ତୁ ଚାଳ ନାହିଁ, ଆଜବେଷ୍ଟ ଛପର ହେଇଚି। ମାଟି କାନ୍ଥରେ ଖଣ୍ଡେ ଦର୍ପଣକାଚ ଲଗାଯାଇଛି। ସେଥିରେ ସିଏ ପିଲାଦିନେ ମୁହଁ ଦେଖୁଥିଲେ। ତା' ପାଖକୁ ଲାଗି ଠଣାଟିଏ। କାନ୍ଥ ଲିପାପୋଛା ହୋଇ ନାହିଁ, ଢେଲାଢେଲା ମାଟି ଛାଡୁଛି। ଗଭୀର ଠଣା ଭିତରେ ବାହା ପର୍ଯ୍ୟନ୍ତ ହାତ ପୂରାଇଲେ ପ୍ରଫେସର। ହାତକୁ ଲାଗିଲା କ'ଣ ଗୋଟେ ଗୋଲ ପଦାର୍ଥ। କଳା ପଡ଼ି ଯାଇଥିବା ଶଙ୍ଖ ଗୋଲିଟିଏ। ସିଏ ପିଲା ଦିନେ ଧୂଳିଦାଣ୍ଡରେ ବାଟି ଖେଳୁଥିଲେ। ବାଟିଟାକୁ ହାତରେ ଦଳି ସଫା କରିଦେଇ ଚିହ୍ନିଲେ। ପିଲାଦିନେ ତାଙ୍କର ପ୍ରିୟ ଥିଲା ସେଇ ବାଟିଟା। ଖୁସିରେ ତାଙ୍କ ମୁହଁଟା ଓସାରିଆ ହୋଇଗଲା। ବାଟିଟିକୁ ଅତି ଯତ୍ନରେ ପ୍ୟାଣ୍ଟ ପକେଟରେ ରଖିଲେ। ଘରର କବାଟ ପାଖକୁ ଆସିଲେ। ତାଙ୍କ ପିଲାଦିନର ସେଇ ପୁରୁଣା ଯାଉଁଳି କବାଟ ଲାଗିଚି। ପିଲାଦିନେ ରାଗିଯାଇ ସିଏ କଟୁରୀରେ କବାଟକୁ ଦୁଇ ଚୋଟ ହାଣି ଦେଇଥିଲେ। କବାଟଟା ଏବେବି ସେଇ ଖଣ୍ଡିଆ ଦାଗକୁ ଧରି ରଖିଛି। ଏଇଟା ନିଶ୍ଚୟ ତାଙ୍କ ଘର।

କବାଟଟା ଭିତରୁ ବନ୍ଦ ଥିଲା। ବାହାର ପାଖକୁ ଝୁଲୁଥିବା ଲୁହା ଶିକୁଳିକୁ ଝଣ୍ ଝଣ୍ କଲେ ପ୍ରଫେସର। ଅଳ୍ପ ସମୟ ପରେ କବାଟ ଖୋଲିଲା। ପ୍ରଫେସର ଓ ନୀଳିମା ଉଲ୍ଲସିତ ହେଲେ। ଜଣେ ମଧ୍ୟବୟସର ଲୋକ ଘର ଭିତରୁ ମୁହଁ କାଢି କହିଲା—କଣ ବାବୁ, ଦେଶୀ ଚଳିବ? କ'ଣ ଦେବି? ଚାଉଳି ନା ମହୁଲି?

ଆନନ୍ଦ ଚନ୍ଦ୍ର ପହି

ପ୍ରଫେସର ଦୁଇ ପାଦ ପଛକୁ ହଟି ଆସି ପଚାରିଲେ—ଏଠି କ'ଣ ମଦ ବିକ୍ରି ହୁଏ ?

ଲୋକଟି ତାଚ୍ଛଲ୍ୟ କରି କହିଲା—ମଦ ଦୋକାନରେ ମଦ ବିକ୍ରି ନହୋଇ ଆଉ କଣ ଫଳମୂଳ ବିକ୍ରି ହୁଅନ୍ତା ନା ଘିଅ, ଦୁଧ ବିକ୍ରି ହୁଅନ୍ତା ?

ପ୍ରଫେସର ପଚାରିଲେ—ଏଟା କାହା ମଦ ଦୋକାନ ?

ଲୋକଟି ଉତ୍ତର ଦେଲା—ଏଟା ଯାହାଘର, ତା ମଦଦୋକାନ।

ପ୍ରଫେସର ଆହୁରି ଆଶ୍ଚର୍ଯ୍ୟ ହେଲେ। ପଚାରିଲେ—ଏଟା କାହା ଘର ?

ଲୋକଟି ଟିକେ ଚୁପ୍ ହୋଇ କ'ଣ ଭାବିଲା। ତାପରେ କହିଲା— ଏଟା ଏ ଗାଆଁର ମହେନ୍ଦ୍ର ବିଶ୍ବାଳଙ୍କ ଘର। କାହିଁକି ? କ'ଣ ହେଲା ?

ପ୍ରଫେସର ପୁଣି ପଚାରିଲେ—ଏଟା କ'ଣ ମହେନ୍ଦ୍ର ବିଶ୍ବାଳଙ୍କର ନିଜ ଘର ?

ଲୋକଟି ଏଥର ଟିକେ ବିରକ୍ତ ହୋଇ କହିଲା—ନାଇଁ, ଏ ଘରଟା ଏଇ ଗାଆଁର ଅନିଲ ମହାପାତ୍ରଙ୍କର। ସିଏ ଅନେକ ଦିନରୁ ମଲେଣି। ଅନିଲ ମହାପାତ୍ରଙ୍କର ଏଠି ଆଉ କେହି ନାହାଁନ୍ତି। ତାଙ୍କର ଗୋଟେ ପୁଅ ଅନେକ ଦିନ ହେଲା ଆମେରିକାରେ ଘର ଦ୍ୱାର କରି ରହୁଛି। ସିଏ ଏ ଘର ଆଉ ଜମିବାଡ଼ି ସବୁ ମହେନ୍ଦ୍ର ବିଶ୍ବାଳଙ୍କୁ ବିକ୍ରି କରି ଦେଇଛି।

ପ୍ରଫେସର ସେ ଲୋକକୁ ନିଜର ପରିଚୟ ଦେଇ କହିଲେ—ମୁଁ ସେଇ ସୁନିଲ ମହାପାତ୍ର। ମୁଁ ମୋ ଘର କି ଜମି କାହାକୁ ବିକ୍ରି କରି ନାହିଁ। ମୁଁ ଆମେରିକା ଛାଡ଼ି ଆଜି ଗାଆଁକୁ ଆସିଚି। ଏଠି ରହିବି। ଆଉ ଆମେରିକା ଯିବି ନାଇଁ।

ପ୍ରଫେସର ସେ ଲୋକଠୁ ପଚାରି ବୁଝିଲେ, ମହେନ୍ଦ୍ର ବିଶ୍ବାଳ ଖୁବ୍ ଟାଉଟର। ସିଏ ଗ୍ରାମପଞ୍ଚାୟତର ସରପଞ୍ଚ। ତା ହାତରେ ଥାନା, ଏମ୍.ଏଲ୍.ଏ. ଆଉ ମନ୍ତ୍ରୀ। ତା ହାତରୁ ଘର କି ଜମି ମୁକୁଳାଇବା ଅସମ୍ଭବ। କେବଳ ଗୋଟିଏ କ୍ଷୀଣ ଉପାୟ ଦେଖାଯାଉଛି। ତାହା ହେଲା, ଗାଆଁର କ୍ଲବ ପିଲା ଯଦି ମାତିବେ ତେବେ ମହେନ୍ଦ୍ର ବିଶ୍ବାଳ କବଳରୁ ଏସବୁ ମୁକୁଳି ପାରେ।

ଗାଆଁ ଦାଣ୍ଡେ ଦାଣ୍ଡେ ପ୍ରଫେସର ଓ ତାଙ୍କ ସ୍ତ୍ରୀ ପୁଣି ଫେରିଲେ କ୍ଲବ ପାଖକୁ। ଗାଆଁ ଚାରି ପଟରେ ଅନେକ ଆମ୍ବଗଛ ଥିଲା। କିନ୍ତୁ ଗୋଟିଏ ହେଲେ ଗଛ ଆଉ ନାହିଁ। ପିଲାଦିନେ ଅନେକ ଖରାବେଳ ତାଙ୍କର କଟିଥିଲା ଏଇ ଆମ୍ବ ତୋଟାରେ। ପ୍ରତି ଆମ୍ବଗଛର ନାଆଁ ତାଙ୍କର ମୁଖସ୍ଥ ଥିଲା। କେତେଟା ଆମ୍ବଗଛର ନାଆଁ ତାଙ୍କର ଏବେ ବି ମନେ ଅଛି। ଆମ୍ବ ତୋଟାର ଶ୍ମଶାନକୁ ଚାହିଁ ଗଛମାନଙ୍କର ନାଆଁ ମନେ ପକାଇଲେ ପ୍ରଫେସର। ଆମ୍ବଗଛଗୁଡ଼ିକର ନାଆଁ ଥିଲା— ନେଡେଇ, କାଳେଇ, କଦଳିଆ, ରସୁଣିଆ, ସୁନ୍ଦରୀ, ନଡ଼ିଆ, ନାକେଇ, ଚନ୍ଦ୍ରଘୁଉଡ଼ି, ତରାଘୁଉଡ଼ି,

ନବାତେଲ, ଘୁମା, ବାଘନଖ, ଗାଲପୋଡ଼ି ଆଉ ଟେପେଟି। ପ୍ରତି ଆମ୍ବ ଗଛ ସହିତ ତାଙ୍କର ଅନେକ ସ୍ମୃତି ଜଡ଼ିତ।

ଗାଆଁରେ ଆଗରୁ ଥିବା ଅନ୍ୟାନ୍ୟ କେନ୍ଦୁ, ଜାମୁ, ବଗୁଲି, ବରକୋଳି, ବର, ଅଶ୍ୱତ୍ଥ ଗଛମାନଙ୍କ ପାଖକୁ ଧାଇଁଲେ ପ୍ରଫେସର। ନା, ତାଙ୍କର ପରିଚିତ ଗୋଟିଏ ହେଲେ ଗଛ ଆଉ ଜୀବିତ ନାହିଁ।

ଗାଆଁ ବିଜୁଳି ଖୁଣ୍ଟରେ ଆଲୁଅ ଜଳି ଉଠିବା ଦେଖି ନୀଳିମା ଚମକି ପଡ଼ିଲେ। ସଂଧ୍ୟା ହେଲାଣି। ରାତିଟା ପାଇଁ ଆଶ୍ରୟସ୍ଥଳ ଠିକଣା କରିବା କଥା ପ୍ରଫେସରଙ୍କୁ ଚେତାଇ ଦେଲେ।

ପ୍ରଫେସର ଅତୀତର ସ୍ମୃତି ସାଉଁଟା ଛାଡ଼ି କ୍ଲବଘର ଆଡ଼କୁ ଆଗେଇଲେ। କ୍ଲବ ପିଲାଙ୍କୁ ନିଜର ପରିଚୟ ଦେଲେ। ରାତିଟା କ୍ଲବରେ ରହିବା ପାଇଁ ଇଚ୍ଛା ପ୍ରକାଶ କଲେ।

ପ୍ରଫେସର ଅନେକ ଦିନ ପରେ ନିଜ ଗାଆଁକୁ ଫେରିଥିବାରୁ କ୍ଲବ ପିଲାମାନେ ଖୁସି ହେଲେ। ମହେନ୍ଦ୍ର ବିଶ୍ୱାଳଠାରୁ ତାଙ୍କ ଘର ଓ ଜମିବାଡ଼ି ମୁକୁଳାଇ ଆଣିବାର ପ୍ରତିଶ୍ରୁତି ଦେଲେ।

ପ୍ରଫେସର ଓ ତାଙ୍କ ସ୍ତ୍ରୀ କ୍ଲବ ଘରେ ବିଶ୍ରାମ କଲେ। ଛକ ଦୋକାନରେ ତାଙ୍କ ପାଇଁ ରୁଟି ଡାଲମା ବରାଦ ଦେଇ କ୍ଲବର ଚାରି ଜଣ ପିଲା ସେଇ ରାତି ରାତି ମହେନ୍ଦ୍ର ବିଶ୍ୱାଳ ଘରକୁ ଗଲେ। ଯିବା ପୂର୍ବରୁ ପ୍ରଫେସରଙ୍କୁ କହିକି ଗଲେ- ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ। ଯେମିତି ହେଲେ ଆମେ ଆପଣଙ୍କ ଘର ଆଉ ଜମି ମହେନ୍ଦ୍ର ବିଶ୍ୱାଳ ହାତରୁ ଆଜି ରାତିରେ ମୁକୁଳାଇ ଆଣିବୁ।

ରାତି ଆଠଟା ବେଳେ କ୍ଲବ ପିଲାମାନେ ମହେନ୍ଦ୍ର ବିଶ୍ୱାଳ ଘରେ ପହଞ୍ଚିଲେ। ତାକୁ ସୁନିଲ ମହାପାତ୍ରଙ୍କ ଫେରିବା କଥା କହିଲେ। ତାଙ୍କ ଘର ଓ ଜମିବାଡ଼ି ଫେରାଇ ଦେବାକୁ ଅନୁରୋଧ କଲେ।

ମହେନ୍ଦ୍ର ବିଶ୍ୱାଳ କ୍ଲବ ପିଲାଙ୍କୁ ସଫା ସଫା ଜଣାଇ ଦେଲା— ଏ ଜମି ଓ ଘର ସୁନିଲ ମହାପାତ୍ରର ବାପା ଅନିଲ ମହାପାତ୍ର ବଞ୍ଚି ଥାଉଁ ଥାଉଁ ମୋତେ ବିକ୍ରି କରିଯାଇଛି। ଏଟା ମୃତଫରକା ଆମେରିକାରେ ଥିଲା। ତା ବାପା ମୋତେ ବିକିବାର ଦଶ ବର୍ଷ ହୋଇଗଲାଣି। ଗଲା ବନ୍ଦୋବସ୍ତରେ ଜମିବାଡ଼ି ସବୁ ମୋ ନାଆଁକୁ ଉଠି ଯାଇଛି।

କ୍ଲବ ପିଲାମାନେ ବିକ୍ରି କବଲା ଦେଖିବାକୁ ଚାହିଲେ। ମହେନ୍ଦ୍ର କହିଲା— କାଗଜପତ୍ର ମୁଁ କୋର୍ଟରେ ଦେଖେଇବି। ତମେ କିଏ ?

କ୍ଲବ ପିଲାମାନେ ମଧ ମହେନ୍ଦ୍ର ବିଶ୍ୱାଳ ଉପରକୁ ଚମକି ଗଲେ। ତାକୁ ମୁହେଁ ମୁହେଁ ଶୁଣେଇ ଦେଲେ—ଠିକ୍ ଅଛି। କାଲି ଆମେ ଗାଆଁ ସଭା ଡାକିବୁ।

ସଭାରେ କଥାଟା ପଡ଼ିବ। ସେଇଠି ଚିହ୍ନିବ, ଆମେ କିଏ ?

ଗାଁ ସଭା କଥା ଶୁଣି ମହେନ୍ଦ୍ର ବିଶ୍ବାଳ କଥାର ମୋଡ଼ ବୁଲାଇଲା—ତମେ ସବୁ ପିଲାଲୋକ, କିଛି ଜାଣିନା। ସୁନିଲ ମହାପାତ୍ର ଆଜିକି ତିରିଶ ବର୍ଷ ହେଲା ଆମେରିକାରେ ଥିଲା। ଆଜି ପର୍ଯ୍ୟନ୍ତ ଗାଁକୁ ଆସୁ ନଥିଲା, ଆଜି କାହିଁକି ଗାଁ ମନେ ପଡ଼ିଲା ?

କ୍ଲବ ପିଲାମାନେ ପରସ୍ପର ମୁହଁକୁ ଚାହିଁଲେ। ଏ ଜଟିଳ ପ୍ରଶ୍ନର ଉତ୍ତର ସେମାନଙ୍କ ପାଖରେ ନାହିଁ।

ମହେନ୍ଦ୍ର ବିଶ୍ବାଳ କହିଲା—ସୁନିଲ ମହାପାତ୍ର ଆମେରିକାରେ ଗୁପ୍ତଚର କାମ କରୁଥିଲା, ଧରା ପଡ଼ିଲା। ଆମେରିକା ସରକାର ତାକୁ ତାଙ୍କ ଦେଶରୁ ବାହାର କରି ଦେଇଛନ୍ତି। ଗାଁକୁ ଆସି ସୁନିଲ ମହାପାତ୍ର ଦୁଃଖ କରୁଚି ତା ପିଲାଦିନର ଧୂଳିଦାଣ୍ଡ ନାହିଁ କି ଗାଁ ଦାଣ୍ଡରେ ତା ପାଦ ଚିହ୍ନ ନାହିଁ। ଗାଁ ଦାଣ୍ଡ ପିଚୁ ହେଇଚି। ଆମ ଗାଁ ପୋଖରୀ, ଆମ୍ବତୋଟା, ଘର ଦ୍ୱାର ବଦଳି ଯାଇଚି ବୋଲି ସିଏ କ'ଣ ସେ ସବୁର ଫଟ ଉଠେଉଚି। ମଙ୍ଗଳାଶାଳ ବରଗଛଟା କାଟି ତମେ ସେ ଜାଗାରେ କ୍ଲବଘର କରିଚ ବୋଲି ସିଏ ତମ ବିରୋଧରେ ଗାଁ ଲୋକଙ୍କୁ ମତଉଥିବା କଥା ମୋ କାନକୁ ଆସିଚି। ତମେ ଶୁଣିନା ?

କ୍ଲବ ପିଲାଙ୍କ କଳିଜାରେ ଚିଆଁ ଲାଗିବା ପରି ସେମାନେ ଚମକି ଚାହିଁଲେ ପଟେଇରଙ୍କ ମୁହଁକୁ। କ୍ରୋଧର ସାପଟା ଗୋଡ଼ରେ ଗୁଡ଼େଇ ହେଇ ହେଇ ସେମାନଙ୍କ ମୁଣ୍ଡକୁ ଉଠୁଥିଲା। ତା ପ୍ରଭାବରେ ସେମାନଙ୍କ ହାତ ମୁଠା ମୁଠା ଓ ଆଖି ବଡ଼ ବଡ଼ ହୋଇ ଯାଉଥିଲା। ନାକ ପୁଡ଼ା ଉଠ ପଡ଼ ହେଉଥିଲା।

ମହେନ୍ଦ୍ର ବିଶ୍ବାଳ ଅଧିକ ଉଲ୍ଲସିତ ହୋଇ କହି ଚାଲିଲା—ଟଙ୍କା ପଇସା ନିଶା ଯାହାଠି ଲାଗିଲାଣି ସିଏ ସବୁ କରି ପାରିବ। ସୁନିଲ ମହାପାତ୍ର ଆମ ଦେଶକୁ ଆସି ପାକିସ୍ତାନ ପାଇଁ ଗୁପ୍ତଚର କାମ କରୁଚି। ସିଏ ସଂନ୍ତ୍ରାସବାଦୀଙ୍କୁ ସବୁ ଗୁପ୍ତ ତଥ୍ୟ ଯୋଗାଇ ସେମାନଙ୍କଠୁ ପ୍ରଚୁର ଟଙ୍କା ପାଉଛି। ମୁଁ ଆଜି ଥାନାରେ ଖବର ଦେଇକି ଆସିଚି। କାଲି ସକାଳୁ ପୋଲିସ ଆସିବ, ସୁନିଲ ମହାପାତ୍ରକୁ ଗିରଫ କରିବ। ପୋଲିସ ଯଦି କାଲି ଆସି ଦେଖେ ତମେ ସବୁ ସେ ସୁନିଲ ମହାପାତ୍ର ଓ ତା ସ୍ତ୍ରୀକୁ କ୍ଲବରେ ଆଶ୍ରୟ ଦେଇଛ, ତାହେଲେ ତା ସହିତ ପୋଲିସ୍ ତମକୁ ସବୁ ଗିରଫ କରିବ। ତମେ ଦଶ, ବାର କି ପନ୍ଦର ବର୍ଷ ଜେଲ୍‌ରେ ଚକି ପେଷିବ।

କ୍ଲବ ପିଲାମାନେ ମୁଣ୍ଡ ତଳକୁ କରି ମହେନ୍ଦ୍ର ବିଶ୍ବାଳ ଘରୁ ଫେରିଲେ କ୍ଲବକୁ। ସେତେବେଳକୁ ରାତି ଦଶଟା ହେଲାଣି। ସୁନିଲ ମହାପାତ୍ର ଓ ତାଙ୍କ ସ୍ତ୍ରୀ ରୁଚି, ଡ଼ାଲମା ଖାଇବାକୁ ଯାଉଥିଲେ। କ୍ଲବ ପିଲାମାନେ ସେମାନଙ୍କ ଉପରେ

ଅତ୍ୟାଚାର ଆରମ୍ଭ କଲେ। ରୁଟି ଡାଲମାକୁ ପାଦରେ ଚକଟି ଦେଲେ। ତାଙ୍କ ବ୍ରିଫ କେଶ୍ ଖୋଲି କ୍ୟାମେରା, ଟେପ୍‌ରେକର୍ଡର, ରେଡ଼ିଓ ଏବଂ ଅନ୍ୟସବୁ ଭଲ ଭଲ ଜିନିଷ ଛଡ଼ାଇ ନେଇ ବଳକା ଜିନିଷ ଫୋପଡ଼ା ଫିଙ୍ଗା କରି ଦେଲେ।

ସୁନିଲ ମହାପାତ୍ର ଓ ତାଙ୍କ ସ୍ତ୍ରୀ ଯେତେ ଅନୁନୟ, ବିନୟ କଲେ ତାଙ୍କ କଥା କେହି ଶୁଣିଲେ ନାହିଁ। ତାଙ୍କର ଅପରାଧ କ'ଣ ବୋଲି ପଚାରିବା ପରେ ତାଙ୍କ ପିଠି ଆଉ ଗାଲରେ, ବିଧା, ଚାପୁଡ଼ା, ଗୋଇଠା ବର୍ଷିଗଲା। କୌଣସିମତେ ଜୀବନ ବଂଚାଇ ସ୍ୱାମୀ, ସ୍ତ୍ରୀ ଦୁହେଁ କ୍ଲବ ଘରୁ ପଦାକୁ ପଳାଇ ଆସିଲେ। ବାହାରେ ଶୀତ ରାତି। ଚାରିଆଡ ଅନ୍ଧାର। ପେଟରେ ଭୋକ, ଦେହରେ କ୍ଲାନ୍ତି ଆଉ ମାଡ଼, ମନରେ କ୍ଷୋଭ। ସର୍ବାଙ୍ଗରେ ଶୀତ।

ରାତିରେ ସ୍ୱାମୀ ସ୍ତ୍ରୀ ଦୁହେଁ ଯାହା ଘର କବାଟ ପିଟିଲେ କେହି ତାଙ୍କୁ ଆଶ୍ରୟ ଦେଲେ ନାହିଁ। ସମସ୍ତଙ୍କର ଗୋଟିଏ କଥା– ମହେନ୍ଦ୍ର ବିଶ୍ୱାଳ କହିଛି ତୁମେ ଗୁପ୍ତଚର। ତମକୁ ଆଶ୍ରୟ ଦେଲେ ବିପଦ।

କିଛି ଉପାୟ ନ ପାଇ ସୁନିଲ ମହାପାତ୍ର ଆଉ ତାଙ୍କ ସ୍ତ୍ରୀ ଦୁହେଁ ଜଣଙ୍କ ପିଣ୍ଡାରେ ରାତିଟା ରହିବା ପାଇଁ ସ୍ଥିର କଲେ। ପିଣ୍ଡା ଉପରେ ବେଡ୍ ହୋଲ୍‌ଡ଼ର୍‌କୁ ବିଛାଇ କମ୍ବଳ ଘୋଡ଼ାଇ ହୋଇ ଦୁହେଁ ଶୋଇଲେ। ନିଜ ଗାଁରେ ଏମିତି ଅସୁବିଧାର ସମ୍ମୁଖୀନ ହେବା କଥା ତାଙ୍କ କଳ୍ପନା ଭିତରେ ନଥିଲା।

ସକାଳ ସାତଟା ବେଳକୁ ପୋଲିସ ଗାଡ଼ି ପହଞ୍ଚିଲା। ପୋଲିସ ସବ୍ ଇନିସ୍‌ପେକ୍ଟରଙ୍କ ସହିତ ଦୁଇଜଣ କନେଷ୍ଟବଲ, ମହେନ୍ଦ୍ର ବିଶ୍ୱାଳ ଆଉ ଗାଆଁ କ୍ଲବର ସବୁ ଟୋକା ଆସି ପହଞ୍ଚିଲେ ସୁନିଲ ମହାପାତ୍ର ଓ ନୀଳିମା ଦେବୀଙ୍କ ଶୋଇବା ସ୍ଥାନରେ। ରଘୁ ପ୍ରଧାନର ଦାଣ୍ଡବାରଣ୍ଡାରେ ଶୋଇଛନ୍ତି ଦୁହେଁ ଦୁଇଟା କମ୍ବଳ ଘୋଡ଼େଇ ହୋଇ। ମୁଣ୍ଡ ତଳେ ବ୍ରିଫ୍‌କେଶ୍।

ପୋଲିସ୍ ସବ୍‌ଇନିସ୍‌ପେକ୍ଟର ବାଡ଼ିରେ ସୁନିଲ ମହାପାତ୍ରଙ୍କ ଉପରୁ କମ୍ବଳଟା କାଢି ଆଣିଲେ। ସୁନିଲ ମହାପାତ୍ର ଆଖି ମଳି ମଳି ନିଦରୁ ଉଠିଲେ। ଚାରିକଡ଼କୁ ଆଖି ବୁଲାଇ ଆଣିଲେ। ତାଙ୍କ ଚାରିପଟରେ ଗାଆଁର ସବୁଲୋକ ରୁଣ୍ଡ ହୋଇଛନ୍ତି। ନୀଳିମା ଦେବୀଙ୍କୁ ନିଦରୁ ଉଠାଇଲେ।

ପୋଲିସ ସବ୍‌ଇନିସ୍‌ପେକ୍ଟର ପଚାରିଲେ–ଆପଣ ପ୍ରଫେସର ସୁନିଲ ମହାପାତ୍ର ?

– ହଁ।

– ଆପଣଙ୍କୁ ମୁଁ ଗିରଫ୍ କରିବି।

ସୁନିଲ ମହାପାତ୍ର ଗିରଫ୍ କଥା ଶୁଣି ଚମକି ପଡ଼ିଲେ। କାଲି ରାତିର

ମାଡ଼, ଅତ୍ୟାଚାର, ଆଉ ଆଜିର ପୋଲିସ୍ ଚଢ଼ଉ। ପ୍ରଫେସର ମହାପାତ୍ରଙ୍କ ମୁହଁଟା ଭୟରେ କାହୁରା ଦିଶିଲା। ସିଏ ପଚାରିଲେ–ମୋର ଅପରାଧ କ'ଣ ସାର୍?

ସବଇନିସ୍‌ପେକ୍ଟର ଜଣାଇଲେ, ଆପଣ ଜଣେ ଗୁପ୍ତଚର। ଜାତୀୟ ସୁରକ୍ଷା ଆଇନ ବଳରେ ମୁଁ ଆପଣଙ୍କୁ ଗିରଫ୍ କରିବି।

ପ୍ରଫେସର ମହାପାତ୍ର ବିସ୍ମିତ ହେଲେ। ଖୁବ୍ ବିକଳ ହୋଇ କହିଲେ-ଆପଣ ମୋତେ ବିଶ୍ୱାସ କରନ୍ତୁ। ମୁଁ ମୋଟେ ଗୁପ୍ତଚର ନୁହଁ। ମୁଁ ଏ ଗାଆଁର ଲୋକ। ଏଠି ମୋର ଘର ଅଛି, ଜମିବାଡ଼ି ଅଛି। ମୋ ପାଖରେ ପାସପୋର୍ଟ ଆଉ ଭିସା ଅଛି।

ମହେନ୍ଦ୍ର ବିଶ୍ୱାଳ କହିଲା– ଆଜିକାଲି ଟଙ୍କା ମଧ୍ୟ ନକଲ ବାହାରିଲାଣି। ଜାଲ୍ ପାସ୍‌ପୋର୍ଟ, ଭିସା ମିଳିବା କିଛି ଅସମ୍ଭବ ନୁହଁ।

ପ୍ରଫେସର ବ୍ରିଫ୍‌କେଶ୍ ଖୋଲି ପାସ୍‌ପୋର୍ଟ ଆଉ ଭିସା ବାହାର କରି ସବ୍ ଇନିସ୍‌ପେକ୍ଟରଙ୍କୁ ଦେଖାଇଲେ। ଜାଲି କି ଅସଲି ପରୀକ୍ଷା କରି ଦେଖିବା ପାଇଁ ଅନୁରୋଧ କଲେ।

ସବ୍‌ଇନିସ୍‌ପେକ୍ଟର ପାସପୋର୍ଟ ଓ ଭିସାକୁ ଏପଟ ସେପଟ କରି ପରୀକ୍ଷା କରି ଦେଖି ସାରି କହିଲେ– ଏହା ଠିକ୍ କି ଜାଲ୍ ପରୀକ୍ଷା କରିବା ପାଇଁ ଏ ବାବଦରେ ଥିବା ବିଶେଷଜ୍ଞ ପାଖକୁ ପଠାଇବାକୁ ହେବ। ଆପଣ ଆସନ୍ତୁ, ଗାଡ଼ିରେ ବସନ୍ତୁ।

ପ୍ରଫେସର କାନ୍ଦୁଣୁମାନ୍ଦୁଣୁ ହୋଇ କହିଲେ– ମୁଁ ମିଛ କହୁନାହିଁ। ଏଠି ଆମ ଗାଆଁ ଲୋକମାନେ ଅଛନ୍ତି। ସେମାନଙ୍କୁ ପଚାରନ୍ତୁ। ମୁଁ ଏଇ ଗାଆଁର ଲୋକ। ତିରିଶ ବର୍ଷ ଆମେରିକାରେ ରହିବା ପରେ ଗାଆଁକୁ ଫେରିଛି। ମୁଁ ଗୁପ୍ତଚର ନୁହଁ।

ସବ୍‌ଇନିସ୍‌ପେକ୍ଟର କହିଲେ ଆପଣ ଏ ଗାଆଁର ଲୋକ, ଏ କଥା ମୁଁ ଜାଣିଚି। କିନ୍ତୁ ଆପଣ ତିରିଶ ବର୍ଷ କାଳ ଆମେରିକାରେ ଥିଲେ, କେବେ ଦିନେ ହେଲେ ଗାଆଁକୁ ଆସୁନଥିଲେ, ଆଜି କାହିଁକି ଗାଆଁକୁ ଆସିଲେ?

ପ୍ରଫେସର ମହାପାତ୍ର କହିଲେ– ନିଉୟର୍କ ସହରରେ ନିଜର ଘରଟିଏ କିଣିବାର ସମସ୍ତ ଯୋଜନା କରି ସାରିଥିଲି। ସେଇ ଘରର ଆଗ୍ରିମେଣ୍ଟ ସାଇନ୍ କରିବାକୁ ନିଉୟର୍କ ଯିବା ବାଟରେ ଗୋଟିଏ କଟେଜ ଦେଖି ଅଟକି ଗଲି। କଟେଜଟି ଥିଲା ଆମ ଗାଆଁ ଘର ପରି ସୁନ୍ଦର। ମାଟିକାନ୍ଥ, ଚାଳଛପର। ସେଇ କଟେଜ ଭିତର

ଦେଇ ଆମ ଘର ଆଉ ଆମ ଗାଆଁ ମୋ ପାଖକୁ ଓହ୍ଲେଇ ଆସିଲା । ମୋ ଗାଆଁ ମୋ ସ୍ମୃତିର ଯାଦୁଘର । ଗାଆଁ ମାଟିର ଆକର୍ଷଣ ମତେ ଟାଣିଲା, ଝୁଙ୍କେଇଲା । ଆମେରିକା ଖୁଣ୍ଟରୁ ମୋ ପଘା ଛିଣ୍ଡିଗଲା । ଆମେରିକାର ଲୋକମାନେ ସଭ୍ୟତାର ଚାକଚକ୍ୟ, ଆଭିଜାତ୍ୟ ଓ କୋଳାହଳ ପ୍ରତି ବିତସ୍ପୃହ ହୋଇ ସହରଠାରୁ ଅନେକ ଦୂରରେ ନିର୍ଜନ, ନିକାଞ୍ଚନ ସ୍ଥାନରେ କୋଟି କୋଟି ଟଙ୍କା ଖର୍ଚ୍ଚ କରି କୃତ୍ରିମ ଉପାୟରେ ପଲ୍ଲୀ ପରିବେଶ ସୃଷ୍ଟି କରି ତା ଭିତରେ ରହିବାକୁ ସବୁଠୁ ବେଶୀ ପସନ୍ଦ କରୁଛନ୍ତି । ମୁଁ ଭାବିଲି ମୁଁ ତାହେଲେ କାହିଁକି ଆମ ଗାଆଁରେ ଥିବା ଶାନ୍ତ, ସବୁଜ, ପାହାଡ଼, ଝରଣା ଘେରା ପ୍ରାକୃତିକ ପଲ୍ଲୀ ପରିବେଶରେ ନ ରହିବି ?

ଆମେରିକାରେ ତିରିଶ ବର୍ଷ ରହି ମୁଁ ଅଜସ୍ର ଟଙ୍କା ରୋଜଗାର କରି ସାରିଥିଲି । ଅଧିକ ରୋଜଗାର କରିବାର ଶୋଷ ମୋର ମରିଯାଇଥିଲା । ତାଛଡ଼ା ଆମେରିକାରେ ରୋଜଗାର କରିଥିବା ଟଙ୍କାକୁ ସେଇଠି ସାରା ଜୀବନ ରହି ସେଇ ଆମେରିକା ମାଟିରେ ଖର୍ଚ୍ଚ କରିବା ଅର୍ଥ ଆମେରିକା ପଇସା ଆମେରିକାକୁ ଫେରାଇବା ପରି ହେବ ।

ମୁଁ ସ୍ଥିର କଲି ମୋର ସମସ୍ତ ରୋଜଗାର ନେଇ ମୁଁ ମୋ ଗାଆଁମାଟିକୁ ଫେରିବି । ଶେଷ ଜୀବନ ସେଇଠି ପ୍ରାକୃତିକ ପରିବେଶ ଭିତରେ କଟାଇବି । ଏମିତି ଏକ ସ୍ୱପ୍ନ ବିଭୋର ମନ ନେଇ ସ୍ମୃତି ସାଉଁଣିବାକୁ ଗାଆଁରେ ପହଞ୍ଚି ଦେଖିଲି ସବୁ ଓଲଟି ଯାଇଛି ।

ମୁଁ ଆସି ଦେଖୁଛି ମୋ ସ୍ମୃତିର ଗାଆଁ ଆଉ ନାହିଁ । ମୋ ଗାଆଁ ସହରକୁ ଅନୁକରଣ କରି ଗୋଟେ କଦାକାର ଖଣ୍ଡିଆ ଟାଉନରେ ପରିଣତ ହୋଇଛି । ମାଟି କାନ୍ଥ, ଚାଳ ଛପର, ଲିପାପୋଛା ଚଟାଣ ଥିବା ଘର ସ୍ଥାନରେ ଠିଆ ହୋଇଛି ବିଚିତ୍ର ଘରସବୁ । କାହାର କାନ୍ଥ ମାଟି, ଛାତ ଆଜବେଷ୍ଟ ତ ଆଉ କାହାର କାନ୍ଥ ପଥର, ଛାତ ଚାଳ ଆଉ ଚଟାଣ ସିମେଣ୍ଟ । ଗାଆଁର ଧୂଳି ଦାଣ୍ଡ ବଦଳରେ ଖଣ୍ଡିଆ ଖାବରା କଦର୍ଯ୍ୟ ପିଚୁ ରାସ୍ତା । ଗାଆଁ ବାହାରେ ଭିତରେ ଗୋଟିଏ ହୋଇ ଗଛ ନାହିଁ । ଗାଆଁ ପୋଖରୀ, ମଙ୍ଗଳାଶାଳ, ଭାଗବତ ଘର କିଛି ନାହିଁ । ଗାଆଁର ପ୍ରାକୃତିକ ପରିବେଶ ଧ୍ୱଂସ ପାଇଯାଇଛି ।

ମୁଁ ପୃଥିବୀର ସର୍ବାଧୁନିକ ନିଉୟର୍କ ସହର ଛାଡ଼ି ଏମିତି ଗୋଟେ ବିକୃତ ଖଣ୍ଡିଆ ଟାଉନ ଦେଖି ପ୍ରଥମେ ବିସ୍ମିତ ହୋଇଯାଇଥିଲି । ଏମିତି ଗୋଟେ ବିଚିତ୍ର ସ୍ଥାନ ଭାଏ ଯାହା ଗାଆଁ ନୁହଁ କି ସହର ନୁହଁ । ମୁଁ ସବୁଠୁ ବେଶୀ ବିସ୍ମିତ

ହେଲି ଯେତେବେଳେ ଦେଖିଲି ମୋ ନିଜ ଘରଟା ଗୋଟେ ମଦଭାଟି ହୋଇଛି। ମୋ ଜମିବାଡ଼ି ଘରଦ୍ୱାର ସବୁ ଅନ୍ୟ ଜଣେ ଅକ୍ତିଆର କରି ବସିଛି। ମୋ ଘରକୁ ମଦଭାଟି କରିଥିବା ଓ ଜମିବାଡ଼ି ଅକ୍ତିଆର କରିଥିବା ଲୋକ ଆଉ କେହି ନୁହଁ ଏଇ ମହେନ୍ଦ୍ର ବିଶ୍ବାଳ, ଯିଏ ଏ ଅଞ୍ଚଳର ସରପଞ୍ଚ ଆଉ ମାମଲତକାର୍।

ମୁଁ ମୋ ଜମିବାଡ଼ି, ଘର ମୁକୁଳାଇବା ପାଇଁ ଏଇ କ୍ଲବ ପିଲାଙ୍କ ଆଶ୍ରୟ ନେଇଥିଲି। କିନ୍ତୁ ଏମାନେ ମହେନ୍ଦ୍ର ବିଶ୍ବାଳ କଥାରେ ପରିଚାଳିତ ହୋଇ ମୋ ଉପରେ କାଲି ରାତିରେ ଅତ୍ୟାଚାର କଲେ। ମୋ ଜିନିଷ ପତ୍ର ଛଡ଼ାଇ ନେଲେ। ଆମ ଦୁହିଁଙ୍କୁ ମାଡ଼ ମାରି ଶୀତ ରାତିଟାରେ କ୍ଲବଘରୁ ବାହାର କରିଦେଲେ।

ପୋଲିସ ସବ୍‌ଇନିସ୍‌ପେକ୍ଟର ପ୍ରଫେସରଙ୍କ କଥାର ସତ୍ୟତା ଉପଲବ୍ଧି କରି ତାଙ୍କୁ ଛାଡ଼ି ଦେଲେ। ତାଙ୍କ ସଂପତ୍ତି ଜବର ଦଖଲ ଓ ତାଙ୍କ ନାଆଁରେ ମିଥ୍ୟା ରିପୋର୍ଟ କରିଥିବା ଅପରାଧରେ ମହେନ୍ଦ୍ର ବିଶ୍ବାଳଙ୍କୁ ଆରେଷ୍ଟ କଲେ। କ୍ଲବ ପିଲାମାନଙ୍କୁ ମଧ ପ୍ରଫେସର ଦମ୍ପତିଙ୍କୁ ହରକତ କରିଥିବା ଅଭିଯୋଗରେ ଆରେଷ୍ଟ କରି ଜିପ୍‌ରେ ବସାଇଲେ।

ପ୍ରଫେସର ମହାପାତ୍ର ପୋଲିସ ସବ୍‌ଇନିସ୍‌ପେକ୍ଟରଙ୍କୁ ଅନୁରୋଧ କଲେ– ସେମାନଙ୍କୁ ମୁକୁଳାଇ ଦିଅନ୍ତୁ। ମୁଁ ସେଇମାନଙ୍କ ସହଯୋଗରେ ଆମର ଏ ଗାଆଁକୁ ପୁଣି ଥରେ ଗଢ଼ିବି। ପ୍ରାକୃତିକ ପଲ୍ଲୀ ଜୀବନ ଯାହା ଆମ ଭାରତୀୟ ସଂସ୍କୃତିର ପ୍ରାଣ କେନ୍ଦ୍ର ତାହା ପ୍ରତି ଗାଆଁରେ ଆଜି ଅବକ୍ଷୟ ବାଟରେ ପାଦ ଦେଇଛି। ଯଦି ଗାଆଁଗୁଡ଼ିକୁ ଏହି ଅବକ୍ଷୟରୁ ରକ୍ଷା କରା ନ ଯାଏ, ତା ହେଲେ ଆଉ ପଚାଶ ବର୍ଷ ପରେ ଗାଆଁ କ'ଣ ବୋଲି ଯଦି କେହି ପଚାରେ ତାକୁ ଆଉ ଗାଆଁଟିଏ ଦେଖାଇ ହେବ ନାହିଁ। ସେତେବେଳକୁ ଗାଆଁ ନ ଥିବ। ଭାରତର ମାନଚିତ୍ରରୁ ଗାଆଁ ଚିତ୍ରଟି ସଂପୂର୍ଣ୍ଣ ଲିଭି ଯାଇଥିବ। ହୁଏତ ତାକୁ ଗାଆଁର ତୈଳଚିତ୍ରଟିଏ ଦେଖାଇ ଗାଆଁ ବିଷୟରେ ଧାରଣା ଦେବାକୁ ପଡ଼ିବ।

ପ୍ରଫେସର ନିଜ ହାତରେ ମହେନ୍ଦ୍ର ବିଶ୍ବାଳ ଓ କ୍ଲବ ପିଲାମାନଙ୍କର ବନ୍ଧନ ଖୋଲି ଦେଲେ। ସେମାନେ ସମସ୍ତେ ପ୍ରଫେସରଙ୍କ ହାତରେ ହାତ ମିଳାଇ ତାଙ୍କ ସ୍ୱପ୍ନକୁ ସାକାର କରିବାକୁ ନିଜକୁ ପ୍ରସ୍ତୁତ କରୁଥିଲେ। ଗାଆଁର ସବୁଲୋକଙ୍କ ହାତ ଲମ୍ବି ଆସୁଥିଲା ତାଙ୍କ ଆଡକୁ।

ପ୍ରଫେସର ମହାପାତ୍ରଙ୍କ ମନ ଭିତରେ ଗାଆଁ ଭୂଇଁର ଆଦର୍ଶ ନକ୍ସାଟେ ତିଆରି କରିବାର ପ୍ରକ୍ରିୟା ଆରମ୍ଭ ହୋଇଯାଇଥିଲା।



# ରୁଦ୍ଧ ଆବେଗ

ଚାକିରି ଜୀବନରେ ଅନେକ ଲୋକ ନିଷ୍ପତ୍ତି ନେବାରେ ଆଗପଛ ହୁଅନ୍ତି । ଗାଆଁରେ ସ୍ତ୍ରୀ ପିଲାଙ୍କୁ ରଖି ଗାଆଁ ଜମିବାଡ଼ି ନିଜ ହାତରେ କରି ଗାଆଁକୁ ପ୍ରତି ଶନିବାର ଦଉଡ଼ିବା ଉଚିତ ନା ଗାଆଁର ଜମିବାଡ଼ି ସବୁ ବିକ୍ରି କରି ସେଇ ପଇସାରେ ଭୁବନେଶ୍ୱରରେ ଜମି କିଣି ଘରଦ୍ୱାର କରି ସବୁଦିନ ପାଇଁ ଭୁବନେଶ୍ୱରରେ ସ୍ଥାୟୀ ଭାବରେ ରହିବା ଉଚିତ ? ନିଜର ସମସ୍ତ ସଞ୍ଚୟ ଖର୍ଚ୍ଚ କରି ସ୍ତ୍ରୀଙ୍କ ଫର୍ମାସି ପୂରଣ କରିଯିବା ଉଚିତ ନା ନିଜ ପୌରୁଷ ଜାହିର କରି ଘର ପରିଚାଳନା ଦାୟିତ୍ୱ ନିଜ ମୁଠାରେ ରଖିବା ଉଚିତ ? ପିଲାମାନଙ୍କୁ ନିଜ ଇଚ୍ଛା ମୁତାବକ ଚଳିବାରେ ସ୍ୱାଧୀନତା ଦେବା ଉଚିତ୍ ନା ସେମାନଙ୍କୁ ପ୍ରତି କଥାରେ, ପ୍ରତିକାମରେ ନିଜର ନିୟନ୍ତ୍ରଣ ଭିତରେ ରଖିବା ଉଚିତ ? ସରକାରୀ ଚାକିରି ଜୀବନରେ ଅତିଶୟ କର୍ତ୍ତବ୍ୟନିଷ୍ଠ ଓ ଖୋସାମତିଆ ଭାବ ଦେଖାଇ ସର୍ବାନ୍ତଃକରଣରେ ଅଫିସପ୍ରାଣ ହୋଇ ଉପରସ୍ଥମାନଙ୍କଠାରୁ ଭଲ ଚରିତ୍ର ପଞ୍ଜିକା ହାସଲ କରି ଉପରକୁ ଉପରକୁ ପ୍ରମୋସନ ବ୍ୟବସ୍ଥା କରିବା ଉଚିତ ନା ସାଧାରଣ ଭାବେ ଅଫିସ କାମ କରି ଠିକ୍ ପାଞ୍ଚଟାରେ ଅଫିସ ଛାଡ଼ି ସିନେମା, ଥିଏଟର ଦେଖି, ଖବରକାଗଜ ପତ୍ରପତ୍ରିକା ପଢ଼ି ନିଜ ସ୍ତ୍ରୀ ପିଲାଙ୍କ ପରିଧି ଭିତରେ ସମୟ କଟାଇବା ଉଚିତ ?

ଏଇ ପ୍ରତ୍ୟେକ ଗୋଟିଏ ଗୋଟିଏ ଜଟିଳ ପ୍ରଶ୍ନ ହୋଇଥିଲେ ବି ସାଗରବାବୁ ଚାକିରି ଆରମ୍ଭରୁ ସ୍ଥିରମନା ଥିଲେ । କୌଣସି ନିଷ୍ପତ୍ତି ନେବା ପାଇଁ ତାଙ୍କୁ ମୋଟେ ସମୟ ଲାଗୁ ନ ଥିଲା । କେତେକ କହନ୍ତି ସାଗରବାବୁ ଏମିତି ଶୀଘ୍ର ଓ ଦୃଢ଼ ନିଷ୍ପତ୍ତି ନେବା ମୂଳରେ ତାଙ୍କର ତୀକ୍ଷ୍ଣ ବିଚାର-ବୁଦ୍ଧି ଓ ଦୃଢ଼ ମନର ଭୂମିକା

ଆନନ୍ଦ ଚନ୍ଦ୍ର ପହି

ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ । ଆଉ କେତେକ କହନ୍ତି – ନା, ତାଙ୍କର ବିଚାର-ବୁଦ୍ଧି ମୋଟେ ନାହିଁ । ସିଏ ନାକ ସିଧା ବାଟ ଚାଲନ୍ତି । ତାଙ୍କ ଚଲାପଥରେ ଯାହା ପ୍ରଥମେ ଆସିଲା, ତାକୁ ହିଁ ସିଏ ଗ୍ରହଣ କରି ଯାଆନ୍ତି । ଯେଉଁ ରାସ୍ତାକୁ ସିଏ ଥରେ ଧରିଲେ, ତାକୁ ଆଉ ସାରାଜୀବନ ପରିତ୍ୟାଗ କରିବାର ନାଆଁ ଧରନ୍ତି ନାହିଁ । ଯେ କୌଣସି କାମରେ ସାଗରବାବୁ ଯେତେ କ୍ଷତିଗ୍ରସ୍ତ ହେଲେ ବି ସେଥିରୁ ତିଳେ ହେଲେ ଘୁଞ୍ଚନ୍ତି ନାହିଁ ।

ସାଗରବାବୁ ଜଣେ ଦୃଢ଼ମନା ବ୍ୟକ୍ତି ଭାବରେ ଯେତିକି ପ୍ରଶଂସିତ, ତା'ଠାରୁ ବେଶୀ ନିନ୍ଦିତ । ଅନେକ ଲୋକ ତାଙ୍କ ପଛରେ ତାଙ୍କୁ ଏକଜିଦିଆ, ଏକବାଗିଆ କହି ଥଟ୍ଟା କରନ୍ତି । ନାକ ସିଧା ଚାଲିବାରେ ସେ ଅନେକବାର କ୍ଷତିଗ୍ରସ୍ତ ହୋଇଛନ୍ତି । ନାକ ସିଧା ଚାଲୁଚାଲୁ ବାଟରେ ଗଭୀର ଖାତଟିଏ ପଡ଼ିଲେ ମଧ୍ୟ ସେଇ ଖାତରେ ଗୋଡ଼ ଗଳାଇ ଗୋଡ଼ ହାତ ଭାଙ୍ଗି ମାସ ମାସ ଧରି ଚିକିତ୍ସିତ ହୋଇଛନ୍ତି ସିନା ରାସ୍ତାରେ ଖାତ ଦେଖି ବାଟ ଭାଙ୍ଗି ଅନ୍ୟ ବାଟରେ ପାଦ ବଢ଼ାଇ ନାହାଁନ୍ତି । ବାଟ ଭାଙ୍ଗି ଚାଲିଯିବାକୁ ସେ ପସନ୍ଦ କରନ୍ତି ନାହିଁ ।

ଓଡ଼ିଶା ସଚିବାଳୟରେ ଚାକିରି କରିବାର ଦଶବର୍ଷ ଭିତରେ ସେ ଗାଆଁରୁ ତାଙ୍କର ସମସ୍ତ ଜମିବାଡ଼ି ବିକ୍ରିକରି ସ୍ତ୍ରୀ ପିଲା ସମସ୍ତଙ୍କୁ ଧରି ଭୁବନେଶ୍ୱର ଚାଲି ଆସିଲେ । ଏ ନିଷ୍ପତ୍ତି ନେବାରେ ସାଗରବାବୁ ଆଦୌ ଆଗପଛ ହୋଇ ନାହାଁନ୍ତି । ଅବଶ୍ୟ ବଡ଼ ଭାଇ ଭାଉଜଙ୍କ ସହିତ ଏଥିପାଇଁ ଦୀର୍ଘ ଗୋଟିଏ ମାସ କଳି କରିଛନ୍ତି । ଗାଆଁରେ ନିଶାପ ବସାଇଛନ୍ତି । ଗାଆଁରୁ ଚାଷଜମି ବିକିବା ନିଷ୍ପତ୍ତିର ପୁନର୍ବିଚାର କରିବା ପାଇଁ ଗାଆଁର କେତେକ ଶୁଭାକାଂକ୍ଷୀ ସାଗରବାବୁଙ୍କୁ ପରାମର୍ଶ ଦେଇଛନ୍ତି । କିନ୍ତୁ ସାଗରବାବୁ କାହାରି କଥା ରଖି ନାହାଁନ୍ତି । ଗାଆଁରୁ ଜମିବାଡି ବିକ୍ରି କରି ଆଣିଥିବା ଟଙ୍କାରେ ଭୁବନେଶ୍ୱରରେ ଜାଗା କିଣି ଯୁଦ୍ଧକାଳୀନ ଭିତ୍ତିରେ ଘର ତିଆରି କରିଛନ୍ତି ।

ସାଗରବାବୁଙ୍କ ଅଫିସ ଲୋକମାନେ ତାଙ୍କ ଗୃହ ପ୍ରବେଶ ଉତ୍ସବରେ ଯୋଗଦେଇ ଭୋଜି ଖାଇ ଖୁସିହେବା ପରିବର୍ତ୍ତେ ତାଙ୍କ ସୌଭାଗ୍ୟପ୍ରତି ଈର୍ଷା କରିଛନ୍ତି । ଏତେ ଅଳ୍ପ ଦିନର ଚାକିରି ଭିତରେ ଏମିତି ଆଲିସାନ ବିଲ୍ଡ଼ିଙ୍ଗ ଜଣେ ତୃତୀୟ ଶ୍ରେଣୀ କର୍ମଚାରୀ ପକ୍ଷେ କଣ ସମ୍ଭବ ବୋଲି ସନ୍ଦେହ ପ୍ରକାଶ କରିଛନ୍ତି ।

ଆଉ କେତେକ ମତ ଦେଇଛନ୍ତି- ସାଗରବାବୁଙ୍କ ପରି ଦୃଢ଼ ନିଷ୍ପତ୍ତି ନେଇ ପାରୁଥିବା ଲୋକ ପକ୍ଷେ ସବୁ ସମ୍ଭବ । ସବୁ କଥାରେ ଆଗକୁ ପଛକୁ ଚାହୁଁଥିବା

ଲୋକମାନେ କେବଳ ଆଗକୁ ପଛକୁ ଚାହିଁବାରେ ଜୀବନର ଅଧିକାଂଶ ସମୟ ବିତାଇ ଦିଅନ୍ତି । ବାଟ ଚାଲି ପାରନ୍ତି ନାହିଁ । ମସୃଣ ଖମ୍ବ ଚଢୁଥିବା ମାଙ୍କଡ଼ ପରି ଆଗକୁ ଯେତିକି ଯାଆନ୍ତି ପଛକୁ ଫେରନ୍ତି ତା'ଠୁ ଅଧିକ । ଏଥିପାଇଁ ସେମାନଙ୍କ ଜୀବନରେ ଅଗ୍ରଗତି କିଛି ନାହିଁ ।

ସାଗରବାବୁ ସେଇ ଯେ ଗାଆଁ ଜମିବାଡ଼ି ବିକ୍ରିକରି ସ୍ତ୍ରୀ ପିଲା ଧରି ଭୁବନେଶ୍ୱର ଚାଲି ଆସିଲେ, ଆଉ ଗାଆଁକୁ ଯାଇ ନାହାନ୍ତି । ଭୁବନେଶ୍ୱର ତାଙ୍କ ପାଇଁ ଗାଆଁ, ସହର, କର୍ମକ୍ଷେତ୍ର, ତୀର୍ଥସ୍ଥାନ ।

ଅଫିସରେ ସାଗରବାବୁ ଅତ୍ୟନ୍ତ ସମୟାନୁବର୍ତ୍ତୀ । ଠିକ୍ ଘଣ୍ଟାଏ ଘଣ୍ଟାଏ ଅଫିସ ସମୟରେ ଅଫିସ ପହଞ୍ଚନ୍ତି । ଅଫିସ ଛାଡ଼ିବାରେ ମଧ ସେମିତି ସମୟାନୁବର୍ତ୍ତୀ । ଅଫିସ ସମୟ ସରିଲେ ଆଉ ପାଞ୍ଚ ମିନିଟ୍ ଅଫିସରେ ରହନ୍ତି ନାହିଁ । ସାଗରବାବୁ କହନ୍ତି- ଅଫିସକୁ ବିଳମ୍ବରେ ଆସିବା ଆଉ ଅଫିସ ଛୁଟି ପରେ ବିଳମ୍ବ କରି ଅଫିସ ଛାଡ଼ିବା, ଉଭୟ ଦୋଷାବହ ।

ଦୀର୍ଘ ୩୫ବର୍ଷର ଚାକିରିକାଳ ଭିତରେ ସାଗରବାବୁ କେବଳ ନିଜ ଝିଅ ବାହାଘର ବେଳକୁ ମାତ୍ର ୧୫ଦିନ ଅର୍ଜିତ ଛୁଟି ନେଇଥିଲେ । ସିଏ କହନ୍ତି ବର୍ଷକୁ ୧୫ଦିନ ସାମୟିକ ଛୁଟି, ୫୨ଟା ରବିବାର, ୧୨ଟା ଦ୍ୱିତୀୟ ଶନିବାର ଆଉ ସରକାରଙ୍କ ଘୋଷିତ ଅନ୍ୟାନ୍ୟ ପର୍ବ ପର୍ବାଣି ଛୁଟି, ଏତକ ତାଙ୍କ ପାଇଁ ଢ଼େର । ଯା ବାହାରେ ଛୁଟି ନେଇ ଘରେ ବସିବାକୁ କି ଶୋଇବାକୁ ତାଙ୍କୁ ଆଦୌ ଭଲ ଲାଗେନା ।

ଏ ୩୫ ବର୍ଷ ମଧରେ ସେ ଅଫିସ ଲୋକଙ୍କ ସହିତ ଢ଼େର ମିଶିଛନ୍ତି । ସମସ୍ତଙ୍କ ପୁଅ, ଝିଅ ବିଭାଘରରେ ଯୋଗ ଦେଇଛନ୍ତି । କିନ୍ତୁ କାହା ସହିତ ଘନିଷ୍ଠତା ନାହିଁ । ସମସ୍ତଙ୍କ ସହିତ ସମାନ ଆନ୍ତରିକତା । ଅନ୍ୟମାନଙ୍କ ପରି ତାଙ୍କର ଚା, ପାନ, ସିଗାରେଟ୍ ଖାଇବା ସାଙ୍ଗ ନାହାଁନ୍ତି । କିନ୍ତୁ ସାରା ଅଫିସର ଲୋକ, ତାଙ୍କର କେମିତି ରକ୍ତ ସଂପର୍କ ପରି ନିଜର ନିଜର ଲାଗନ୍ତି ।

ସାଗରବାବୁଙ୍କ ଅବସରକାଳୀନ ବିଦାୟ ସଭାରେ ସେ ଭାଷଣ ଦେଉ ଦେଉ ଭାବପ୍ରବଣ ହୋଇ କହିଲେ- ମୁଁ ୨୩ ବର୍ଷର ଉଦ୍ଦାମ ଯୁବକ ଥିବାବେଳେ ଏ ସଚିବାଳୟରେ ଯୋଗ ଦେଇ ଥିଲି । ଦେହକୁ ଟିଙ୍କା ମାରି ଦେଲେ ରକ୍ତ ଛିଟିକି ପଡୁଥିଲା । ମୁଣ୍ଡରେ ଘଞ୍ଚକଳା ମସ୍‌ମସ କେଶ, କାଚପରି ଦାନ୍ତ ଚକ୍‌ଚକ୍ କରୁଥିଲା । ଦୃଷ୍ଟି ଶକ୍ତି ପାରା ପରି ତୀକ୍ଷ୍ଣ ଥିଲା । ଜୀବନର ସବୁଠୁ ମହାର୍ଘ ୨୩ ବର୍ଷରୁ

୫୮ ବର୍ଷ ଏଇ ସଚିବାଳୟର ପାଚେରି ଭିତରେ ମୁଁ କଟାଇଛି । ମୁଁ ଯୁବକ ଭାବେ ସଚିବାଳୟରେ ପ୍ରବେଶ କରିଥିଲି, ଯାରି ଭିତରେ ପଶି ପଶି ମୁଁ ବୁଢ଼ା ହୋଇଯାଇଛି । ଠିକ୍ ଗୋଟିଏ ବ୍ରୟଲର କୁକୁଡ଼ା ତାର ଜାଲି ଘରେ ରହି ବୁଢ଼ା ହେବା ପରି । ପ୍ରତିଦିନ ସକାଳ ଦଶରୁ ସଂଧ୍ୟା ପାଞ୍ଚ ପର୍ଯ୍ୟନ୍ତ ସଚିବାଳୟ କୋଠରୀ ଭିତରେ ରହି ରହି ମୋ ମୁଣ୍ଡର କେଶ ଆଉ ପାଟିର ଦାନ୍ତ ଝଡ଼ି ପଡ଼ିଲାଣି । ହାତୀଖିଆ କଇଥ ପରି ମୋ ଭିତରଟା କୋରାକୋରି ପୋଛାପୋଛି । ଏଇଠି ଏଇ ସଚିବାଳୟର ବିଭିନ୍ନ କୋଠରୀ, କ୍ୟାଣ୍ଟିନ, ଲନ ଓ ଲାଇବ୍ରେରୀରେ ରହିଛି ମୋର ୩୫ ବର୍ଷର ସ୍ମୃତି ।

ଶେଷ ଆଡ଼କୁ ସାଗରବାବୁଙ୍କ କଣ୍ଠ ଓଦା ଓଦା ହୋଇ ଜଡିଗଲା । ଆଖିରେ ଲୁହ ଟଳଟଳ ହେଲା । ଆଉ କିଛି କହିବାକୁ ତାଙ୍କ ଓଠ ଦୁଇଟା ଥରୁଥିଲା । ଛେପ, ଲୁହ, ଆବେଗ ଫେଣ୍ଟା ଫେଣ୍ଟି ଶବ୍ଦ ଗୁଡିକ ଆଉ ବାରି ହେଲା ନାହିଁ । ସେ ଆଉ କିଛି ନ କହି ପାରି ଦୁଇ ହାତ ଭିତରେ ମୁହଁ ଘୋଡାଇ କିଛି ସମୟ ବସି ରହିଲେ ।

ବିଦାୟ ସମ୍ବର୍ଦ୍ଧନା ପରେ ଅଫିସ ଗାଡ଼ିରେ କେତେକ ବନ୍ଧୁଙ୍କ ଗହଣରେ ଘରକୁ ଫେରି‌ଲେ ସାଗରବାବୁ । ଫେରିବା ବାଟରେ ତାଙ୍କଠାରୁ ପାଞ୍ଚବର୍ଷ ଜୁନିୟର ସନାତନବାବୁ କହିଲେ- ସାଗରବାବୁ ! ଆପଣ କାଲିଠୁ ମୁକୁଳା ଆକାଶର ବନ୍ଧନମୁକ୍ତ ପକ୍ଷୀ । ଡେଣା ପିଟି ପିଟି ସାରା ଆକାଶ ଉଡ଼ିବେ । ଅଗନା ଅଗନି ବନନ୍ତର ଫଳମୂଳ ଖାଇବେ । ଝରଣାର ଶୀତଳ ଜଳ ପିଇବେ । ଯେଉଁଠି ରାତି ହେବ ସେଇଠି ଅଟକି ଯିବେ । ନିର୍ଦ୍ଦିଷ୍ଟ ପଞ୍ଜୁରୀ କି ଅର୍ଗଳିକୁ ପଶିବାକୁ ଆପଣଙ୍କୁ ଆଉ କେହି ବାଧ୍ୟ କରିବେ ନାହିଁ ।

କିନ୍ତୁ ଅବସର ଗ୍ରହଣ କରିବାର ପରଦିନ ସାଗରବାବୁଙ୍କ ଘରେ ଗୋଟେ ଅଘଟଣ ଘଟିଗଲା । ସବୁଦିନ ପରି ସାଗରବାବୁ ନିତ୍ୟକର୍ମ ସାରି ଖବରକାଗଜ ପଢ଼ି ଗାଧୋଇ ପାଧୋଇ ସକାଳ ନଅଟା ତିରିଶ ମିନିଟରେ ଆସନ ପକାଇ ଖାଇବାକୁ ବସିଗଲେ । ପାଞ୍ଚ ମିନିଟ, ଦଶ ମିନିଟ୍ ବିତିଲା । ତଥାପି ଖାଇବା ଜିନିଷ ବଢ଼ାହେଲା ନାହିଁ । ସ୍ତ୍ରୀ ସୁଜାତା ଦେବୀଙ୍କୁ ସେ ତାଗିଦ କଲେ ଭାତ ବାଢ଼ିବା ପାଇଁ । କିନ୍ତୁ ସୁଜାତା ଶୁଣାଇ ଦେଲେ- ଏ ପର୍ଯ୍ୟନ୍ତ ରନ୍ଧାରନ୍ଧି ସରିନାହିଁ । ଆଉ ଘଣ୍ଟାଏ ଅପେକ୍ଷା କର ।

ଏତିକିରେ ସାଗରବାବୁ ରାଗରେ ପାଚି ଗଲେ । ଠିକ୍ ସମୟରେ କାହିଁକି ରୋଷେଇ ହୋଇନାହିଁ ବୋଲି ସୁଜାତା ଦେବୀଙ୍କଠାରୁ କୈଫିୟତ ମାଗିଲେ । ଖୁବ୍ ତୁମିତୋପାନ

କଲେ । କିନ୍ତୁ ସୁଜାତା ଖୁବ୍ ବିରକ୍ତ ହୋଇ ଜବାବ ଦେଲେ- ଅଫିସ ତ ନାହିଁ, କାହିଁକି ଏତେ ତରବର ହେଉଛ ?

ସାଗରବାବୁ ନିଜର ଭୁଲ ବୁଝି ପାରି ମଧ୍ୟ କଥାଟାକୁ ବୁଲେଇ ନେଲେ- ଅଫିସ ନାହିଁ କିଏ କହିଲା ? ଆଜି କଣ ଅଫିସ ଛୁଟି ? ମୋ ପେନସନ କେଶ ବୁଝାବୁଝି ନ କଲେ ପେନସନ କଣ ସହଜରେ ମିଳିବ ?

କଥାଟାକୁ ସିନା ସୁଜାତାଙ୍କ ପାଖରେ ଚଳେଇ ନେଲେ; କିନ୍ତୁ ସାଗରବାବୁଙ୍କ ଛାତିରେ ଶକ୍ତ ଧକ୍କାଟାଏ ଲାଗିଲା । ଛାତି ଭିତର ଚହଲି ଦୋହଲି ଗଲା ।

ଅଫିସ ନ ଗଲେ ସିଏ ଏତେ ଗୁଡାଏ ସମୟ ଘରେ କ'ଣ କରିବେ ? ସପ୍ତାହରେ ଦୁଇଦିନ ଛୁଟି ପଡ଼ିଗଲେ ଯିଏ ଅତିଷ୍ଠ ହୋଇ ଯାଆନ୍ତି, ସିଏ ବର୍ଷକ ବାରମାସ ଛୁଟି ନେଇ କଣ କରିବେ ? ତାଙ୍କର ଏଠି କି କାମ ଅଛି ? ଘର ତିଆରି ଅନେକ ଦିନରୁ ସରିଛି । ବାଡ଼ି ବଗିଚା କାମ ଦୁଇଘଣ୍ଟା କଲେ ଯଥେଷ୍ଟ । ଆଜିକାଲି ଖବର କାଗଜରେ ବି କିଛି ନାହିଁ । ଅଧଘଣ୍ଟାକରେ ଖବରକାଗଜ ପଢ଼ା ଶେଷ । ଯେମିତି ହିସାବ କଲେ ବି ଅଫିସ ସମୟଟା ଦୀର୍ଘ ୭ ଘଣ୍ଟା ତାଙ୍କ ହାତରେ ବଳିପଡୁଛି । ଏତେ ସମୟ ସିଏ କଣ କରିବେ ? ଶୋଇବେ ? କିନ୍ତୁ କେତେ ଶୋଇବେ ? ଏ ବୟସରେ ନିଦ ମଧ୍ୟ ଗୋଟେ ସମସ୍ୟା । ଦିନରେ ଚାରି ପାଞ୍ଚ ଘଣ୍ଟା ଶୋଇଲେ ରାତିରେ ଆଉ ନିଦ ହେବନାହିଁ । ଏଠି ସମସ୍ତେ କର୍ମଜୀବୀ । ଦଶଟାରୁ ପାଞ୍ଚଟା କେହି ଘରେ ରୁହନ୍ତିନାହିଁ । ଦଶଟାରୁ ପାଞ୍ଚଟା ଭୁବନେଶ୍ୱରଟା ପ୍ରମିଳାନଗରୀ । ଘରେ କେବଳ ପ୍ରାପ୍ତ ବୟସ୍କା ସ୍ତ୍ରୀ ଲୋକମାନଙ୍କର ରାଜତ୍ୱ । ସେମାନେ ସେଇ ସମୟରେ ପୁରୁଷମାନଙ୍କ ଅନୁପସ୍ଥିତିର ଉତ୍ସବ ପାଳନ୍ତି । ଘର ଆଗରେ, ଦୋକାନ ବଜାରରେ ସ୍ତ୍ରୀ ଲୋକମାନଙ୍କ ମେଳା ଚାଲେ ଖରାବେଳ ସାରା ।

ସାଗରବାବୁ ସରକାରୀ ଚାକିରିରୁ ଅବସର ଗ୍ରହଣ କରି ସାରିଥିଲେ ମଧ୍ୟ ନିୟମିତ ଅଫିସ ଯାଉଥିଲେ । ପାଖ ପଡ଼ିଶା ଘରର ଲୋକେ ଥଟ୍ଟାରେ ତାଙ୍କୁ ପଚାରିଲେ- କଣ ସାଗରବାବୁ ! ସରକାରୀ ଚାକିରିରେ ଆପଣଙ୍କୁ ପୁନଃ ନିଯୁକ୍ତି ମିଳିଲା କି ?

ସାଗରବାବୁ ଟିକେ ଅଟକି ଯାଇ ନିଜକୁ ସମ୍ଭାଳି ନେଲେ । ଏ ବିଷୟରେ ତାଙ୍କର ଅନେକ କ୍ଷୋଭ । ସରକାରୀ ଚାକିରିରେ ପୁନଃ ନିଯୁକ୍ତି ଅନେକ ଧଳାହାତୀଙ୍କୁ ମିଳୁଛି । କିନ୍ତୁ ତାଙ୍କ ପରି କର୍ତ୍ତବ୍ୟନିଷ୍ଠ, ସାଧୁ, ସଚ୍ଚୋଟ, ଦକ୍ଷ ତୃତୀୟ ଶ୍ରେଣୀ କର୍ମଚାରୀଙ୍କୁ ପୁନଃ ନିଯୁକ୍ତି ଦେବା ନଜିର ଏପର୍ଯ୍ୟନ୍ତ ନାହିଁ । ଯଦିଓ ତାଙ୍କର ପେନସନ ଗ୍ରାଚ୍ୟୁଇଟି ଆଦି ସମସ୍ତ ସରକାରୀ ପାଉଣା ସିଏ ଅନେକ ଦିନରୁ ପାଇ ସାରିଲେଣି

ତଥାପି ସିଏ ଅଭ୍ୟାସବଶତଃ ଅଫିସ ଯାଉଛନ୍ତି । ସମୟ କଟାଇବାର ଅନ୍ୟ ପନ୍ଥା ତାଙ୍କ ପାଖରେ ନାହିଁ । କିନ୍ତୁ ଏକଥା ପଡ଼ୋଶୀଙ୍କୁ ସେ କହି ପାରିବେ ନାହିଁ । ତେଣୁ ତାଙ୍କୁ ସାଗରବାବୁ କହନ୍ତି- ମୋର ଜି.ପି.ଏଫ୍. ଟଙ୍କାରେ ଗଣ୍ଡଗୋଳ ଅଛି । ଗ୍ରାଚ୍ୟୁଇଟି ଏଯାଏ ମିଳିନାହିଁ । ନିଜେ ଯାଇ ନ ବୁଝିଲେ ସେ ଅଡୁଆ ତୁଟିବ ନାହିଁ ।

ସାଗରବାବୁଙ୍କ ଅବସର ଗ୍ରହଣ ଦୁଇମାସ ପୂରିଯାଇଥିଲେ ମଧ୍ୟ ସିଏ ଠିକ୍ ସମୟରେ ଅଫିସ ଯାଉଥିଲେ । ସଚିବାଳୟର ବିଭିନ୍ନ ବିଭାଗରେ ଥିବା ତାଙ୍କର ସାଙ୍ଗ ଓ ସହକର୍ମୀଙ୍କ ସହିତ ଦୁଃଖ ସୁଖ ହୋଇ, ଲାଇବ୍ରେରୀ, କ୍ୟାଣ୍ଟିନରେ ବସି ତିନିଟା, ଚାରିଟା ବେଳକୁ ହାଟ, ବଜାରରେ ମୁହଁ ମାରି ପାଞ୍ଚଟା ବେଳକୁ ଘରକୁ ଫେରୁଥିଲେ ।

ସାଗରବାବୁଙ୍କ ପୁଅ ସମ୍ବଲପୁରରେ ଚାକିରି କରେ । ସ୍ତ୍ରୀ ଓ ତାର ପୁଅକୁ ଧରି ସେ ଘରଭଡ଼ା ନେଇ ରହୁଛି । ସିଏ ଚିଠି ଲେଖିଥିଲା- ବାପା ! ବୋଉକୁ ଧରି ତୁମେ ଏଠାକୁ ଚାଲିଆସ । ବବଲୁ ତୁମକୁ ଆଉ ବୋଉକୁ ସବୁବେଳେ ଖୋଜୁଛି । ବବଲୁକୁ ସାଙ୍ଗ ମିଳିଯିବ । ତୁମର ମଧ୍ୟ ସମୟ ଭଲରେ କଟିବ ।

ପୁଅର ଚିଠି ପାଇ ସୁଜାତା ଦେବୀ ଜିଦ ଧରିଲେ ସମ୍ବଲପୁର ଯିବାପାଇଁ । ଭୁବନେଶ୍ୱରର ଏ ଘର ଭଡ଼ା ଦେଇଦେବା । ମାସକୁ ଦୁଇହଜାର ଟଙ୍କା ମିଳିବ ।

ସାଗରବାବୁ ରୋକଠୋକ ନାହିଁକଲେ- ତୁମର ଇଚ୍ଛା ଯଦି ତୁମେ ଯାଅ । ମୁଁ ଯିବି ନାହିଁ ।

ସୁଜାତା ଦେବୀ ହଠାତ୍ ରାଗିଗଲେ— କେମିତି ଯିବ ? ତମେ ସମ୍ବଲପୁର ଚାଲିଗଲେ ଅଫିସ ଯିବ କିଏ ? କାହିଁକି ଯେ ତମେ ସେ ଅଫିସକୁ ଯାଅ, ମୁଁ କିଛି ବୁଝି ପାରୁନାହିଁ । ତମର ସେ ଅଫିସ ଲୋକ ତମ ପଛରେ କ'ଣ କିଛି କହୁ ନ ଥିବେ ବୋଲି ଭାବୁଛ ? ଚାକିରି ସରିଲା ପରେ ସବୁଦିନ ଅଫିସକି ଯିବାଟା ତମକୁ କ'ଣ ଭଲ ଲାଗୁଚି କେଜାଣି, ମତେ କିନ୍ତୁ ଜମା ସୁନ୍ଦର ଦିଶୁ ନାହିଁ ।

ସାଗରବାବୁ ସୁଜାତାଙ୍କ କଥାରେ ଆଘାତ ପାଇବା ପରି ବିବର୍ଣ୍ଣ ଦିଶିଲେ । ନିଜକୁ ଆୟତ୍ତ କରି ଖୁବ୍ ସଂଯତ କଣ୍ଠରେ କହିଲେ- ତମର ତା ହେଲେ ଧାରଣା ମୁଁ ଅଫିସ ଯିବା ବନ୍ଦ କରି ପାରିବି ନାହିଁ ବୋଲି ଭୁବନେଶ୍ୱର ଛାଡି କୁଆଡ଼େ ଯିବାକୁ ଚାହୁଁନାହିଁ ।

ସୁଜାତା ଦୃଢ଼ କଣ୍ଠରେ କହିଲେ- ହଁ, ମୋର ସେଇ ଧାରଣା ।

ସାଗରବାବୁ ଶାନ୍ତ କଣ୍ଠରେ ଉତ୍ତର ଦେଲେ- ତମର ଏ ଧାରଣା ମୋତେ

ଠିକ୍ ନୁହେଁ । ମୋର ଅନ୍ୟ କିଛି କାମ ନାହିଁ ବୋଲି ମୁଁ ଅଫିସ୍ ଯାଉଛି ? ତମେ ଯଦି ଚାହିଁବ ମୁଁ କାଲିଠୁ ଅଫିସ ଯିବା ବନ୍ଦ କରିଦେବି । କିନ୍ତୁ ସମ୍ବଲପୁର ଯିବିନାହିଁ ।

ସୁଜାତା ଏଥର ଅପେକ୍ଷାକୃତ ନରମ କଣ୍ଠରେ ପଚାରିଲେ- ସମ୍ବଲପୁର ଗଲେ ତମର ଅସୁବିଧା କଣ ?

ସେଦିନ ବହୁତ ସମୟ ଧରି ସ୍ୱାମୀ ସ୍ତ୍ରୀଙ୍କ ଭିତରେ କଥା କଟାକଟି ଚାଲିଲା । ସାଗରବାବୁ ଦର୍ଶାଇଲେ ଘର ଭଡା ଦେବା ସପକ୍ଷରେ ସିଏ ନୁହନ୍ତି । ଅବସର ଗ୍ରହଣ ପରେ ଅତି ବେଶିରେ ଆଉ ପନ୍ଦର କୋଡିଏ ବର୍ଷ ସିଏ ବଞ୍ଚିବେ । ଏ ସମୟତକ ନିଜ ଘର ଛାଡି ପୁଅ ପାଖରେ ଭଡ଼ାଘରେ ରହିଲେ ତାଙ୍କର ସ୍ୱାଧୀନତା ରହିବ ନାହିଁ କି ପୁଅ ବୋହୂଙ୍କର ସ୍ୱାଧୀନତା ରହିବ ନାହିଁ । ମାସ ଚାରିଟାରେ ପୁଅ, ବୋହୂଙ୍କ ପାଖରେ ସିଏ ଅଣନିଃଶ୍ୱାସୀ ଅନୁଭବ କରିବେ । ତେଣୁ ପୁଅ ଲେଖିଛି, ନାତିକୁ ଦେଖିବାର ଇଚ୍ଛା ଯଦି ଦୁହେଁ ସମ୍ବଲପୁର ଯାଇ ତିନି, ଚାରିଦିନ ରହି ପୁଣି ଫେରି ଆସିବାଟା ଭଲ ହେବ । କିମ୍ବା ଆସନ୍ତା ପୂଜା ଛୁଟିରେ ପୁଅ, ବୋହୂ, ନାତି ସମସ୍ତେ ଭୁବନେଶ୍ୱରକୁ ଆସିବାକୁ ଲେଖିଲେ ଦେଖା ସାକ୍ଷାତ ହେବ ।

ସୁଜାତା ଦେବୀଙ୍କ ମତ କିନ୍ତୁ ଅଲଗା ଥିଲା । ସିଏ ବୁଝାଇଲେ ଅଯଥାରେ ଦୁଇହଜାର ଟଙ୍କାର ମାସିକ ଘରଭଡ଼ା ଛାଡିବାଟା ଠିକ୍ ହେବ ନାହିଁ । ସମ୍ବଲପୁର ନ ଗଲେ ଗାଆଁକୁ ଗଲେ ବି କିଛି ଖରାପ ହୁଅନ୍ତା ନାହିଁ । ସେଠି ଜମି ସିନା ବିକ୍ରି କରି ଦେଇଛ, ଏବେ ବି ଆମ ଭାଗ ଘର ତିନି ବଖରା ଅଛି । ଆମେ ନ ଯାଉ ଥିବାରୁ ଦେଢ଼ଶୁର ଆଉ ତାଙ୍କ ପିଲାଛୁଆ ଚଳୁଛନ୍ତି । ସେ ଘରକୁ ମରାମତି କରି ଗାଆଁରେ ରହିଲେ କିଛି ମନ୍ଦ ହୁଅନ୍ତା ନାହିଁ ।

ସାଗରବାବୁ କହିଲେ- ନା, ଗାଆଁକୁ ଯିବାଟା ମୋ ମତରେ ସୁନ୍ଦର ହେବ ନାହିଁ । ଗାଆଁରେ ଆମର ଜମି ନାହିଁ । ଗାଆଁ ଜମି ବିକ୍ରିକରି ଭୁବନେଶ୍ୱରରେ ଘର କରି ରହିବା ନିଷ୍ପତ୍ତି ଆମେ ଅନେକ ଦିନ ତଳୁ ନେଇଛେ । ତାର ପୁନର୍ବିଚାର ଆଉ ସମ୍ଭବ ନୁହଁ । ଗାଆଁ ଲୋକ ମତେ କଣ କହିବେ ? ମୋ ଭାଇ ନାକରେ କାଠି ପୂରାଇ ହସିବେ । ଗାଆଁ ଜମି ବିକ୍ରି କରିବା ବେଳେ ମୋତେ ଅନେକ ଲୋକ ମନା କରିଥିଲେ ମୁଁ କାହାରି କଥା ରଖି ନାହିଁ । ମୁଁ ଏବେ ମଧ କହୁଛି ଗାଆଁ ଜମି ବିକ୍ରି କରି ଭୁବନେଶ୍ୱର ଘର କରିବା ଠିକ ହୋଇଛି । ଗାଆଁରେ ଜମିଥିଲେ ଆମେ ସେଥିରୁ କିଛି ପାଇ ନ ଥାନ୍ତେ । ବର୍ତ୍ତମାନ ଆମର ଭୁବନେଶ୍ୱରର ଏ ଜାଗା ଆଉ ଘରର ଦାମ ମିଶି ପାଞ୍ଚ, ଛଅ ଲକ୍ଷ ଟଙ୍କାରୁ ବେଶି ହେବ

ପଛେ କମ ହେବ ନାହିଁ । ତୁମର ଯଦି ଇଚ୍ଛା, କୁହ ଏ ଘରରୁ ଅଧା ଭଡ଼ା ଲଗାଇଦେବା । ଗାଆଁକୁ ଯିବାକୁ ଯଦି ଇଚ୍ଛା ଚାଲ ଆଠଦିନ ରହି ଫେରି ଆସିବା । ଗାଆଁରେ ଆଠ ଦିନ ରହିଲେ ବି ତୁମେ ଅତିଷ୍ଠ ହୋଇଯିବ ।

ଏମିତି କଥା କଟାକଟିରେ ସେଦିନ ରାତି ଦୁଇଟା ହୋଇଗଲା । ସାଗରବାବୁ କି ସୁଜାତା ଦେବୀ କେହି ନଖାଇ ଶୋଇ ପଡ଼ିଲେ । ତା ପର ଦିନର ସକାଳ ଥିଲା ସେମାନଙ୍କ ପାଇଁ ନୂଆ ସକାଳ । ସେଦିନ ନିଦ ଭାଙ୍ଗୁ ଭାଙ୍ଗୁ ସକାଳ ଆଠଟା ହୋଇ ଯାଇଥିଲା । ନିତ୍ୟକର୍ମ ସାରି ରୋଷେଇ ଆରମ୍ଭ କଲାବେଳକୁ ସୁଜାତା ଦେଖିଲେ ରାସ୍ତାରେ ଲୋକମାନେ ଅଫିସ ଯିବାକୁ ଆରମ୍ଭ କଲେଣି । ସାଗରବାବୁ ସେତେବେଳେକୁ ଅଗାଧୁଆ ଖବରକାଗଜଟାକୁ ନିଠେଇ ନିଠେଇ ପଢୁଛନ୍ତି ।

ସେଦିନ ଖିଆପିଆ ସରିବା ବେଳକୁ ଦିନ ଗୋଟାଏ ବାଜିଗଲା । ଖାଇ ସାରି ପୁଣି ଖବରକାଗଜଟାକୁ ଧରି ଖଟ ଉପରେ ଶୋଇ ଶୋଇ ତା ଉପରେ ଆଖି ପହଁରାଇ ଆଣୁ ଆଣୁ ସାଗରବାବୁଙ୍କୁ ନିଦ ହୋଇଗଲା । ତାଙ୍କ ନିଦ ଭାଙ୍ଗିବା ବେଳକୁ ଦିନ ସାଢ଼େ ତିନିଟା ବାଜିଲାଣି । ସାଇକେଲରେ ବ୍ୟାଗ୍‌ଟା ଝୁଲାଇ ସାଗରବାବୁ ହାଟକୁ ବାହାରି ଗଲେ ।

ସେହି ଦିନଠୁ ସାଗରବାବୁଙ୍କ ରୁଟିନ ବଦଳିଗଲା । ସିଏ ଆଉ କୌଣସି ଦିନ ଅଫିସ ଯିବା ପାଇଁ ବାହାରିଲେ ନାହିଁ । ସମୟ କାଟିବା ପାଇଁ ଗାଈଟିଏ କିଣି ତା ସେବାରେ ମନୋନିବେଶ କଲେ । ବାଡ଼ିରେ ଋତୁ ଅନୁସାରେ ଫୁଲଗଛ ଆଉ ପନିପରିବା ଗଛ ଲଗାଇ ତାର ଯତ୍ନ ନେଲେ । କାମ ଧନ୍ଦାରେ ଯେତେ ନିଜକୁ ବୁଡ଼ାଇ ରଖିଲେ ମଧ୍ୟ ଅଫିସ ଫେରନ୍ତା ଲୋକଟିଏ ରାସ୍ତା ଉପରେ ଦେଖିଲେ ସେ ଭାବପ୍ରବଣ ହୋଇ ସେ ଆଡ଼କୁ ଅନେକ ସମୟ ଚାହିଁ ରହନ୍ତି । ସେ ସେଇଠି ଠିଆ ଠିଆ ଅଫିସ କଥା ଭାବନ୍ତି । ୩୫ ବର୍ଷର ଅଫିସ ଜୀବନ ତାଙ୍କ ଭିତରକୁ ପଶି ଆସେ ।

ନିଜ ଘରରୁ ଗୋଟେ ପାଖ ଭଡା ଦେଲେ ସାଗରବାବୁ । ଘରଟାର ମଝିରୁ ପାର୍ଟିସନ କରି ଦେଲେ । ଭଡାଟିଆ ପାଇଁ ଗୋଟିଏ ବେଡ୍‌ରୁମ୍, ଗୋଟିଏ ଡ୍ରଇଁ ରୁମ୍, ରୋଷେଇ ଘର, ପାଇଖାନା ଅଲଗା ବାହାର କରିଦେଲେ । ଭଡାଟିଆ ସନ୍ତୋଷ ପଟ୍ଟନାୟକ ନଅତାଲା କୋଠାରେ କାମ କରନ୍ତି । ତାଙ୍କର ଗୋଟିଏ ଶିଶୁ ପୁତ୍ର । ସନ୍ତୋଷବାବୁ ଓ ମମତାଦେବୀ ଖୁବ୍ ମେଳାପି ଲୋକ । ତାଙ୍କ ପାଞ୍ଚ ବର୍ଷର ପୁଅ ଡାବୁଲଟି ଦେଖିବାକୁ ଖୁବ୍ ସୁନ୍ଦର । ଭଲ କଥା କହେ । ଅନେକ ସମୟରେ ସୁଜାତା

ଦେବୀଙ୍କ ପାଖରେ ଥାଏ । ସକାଳେ ସଞ୍ଜେ ବଗିଚା କାମ ବେଳେ ସାଗରବାବୁଙ୍କ ପଛରେ ଗୋଡାଏ ।

ଡାବୁଲ ଭିତରେ ସାଗରବାବୁ ଆଉ ସୁଜାତାଦେବୀ ତାଙ୍କ ନାତି ବବୁଲକୁ ଆବିଷ୍କାର କରନ୍ତି । ସେମିତି ହସକୁରା, ଚଗଲା ଅମାନିଆ ଏ ଡାବୁଲ । ବବୁଲ ଆଉ ଡାବୁଲ ଭିତରେ ଅନେକ ସାମଞ୍ଜସ୍ୟ । ରାତିରେ ସାଗରବାବୁଙ୍କ ପାଖରେ ଗପ ଶୁଣୁ ଶୁଣୁ ଦିନେ ଦିନେ ଡାବୁଲ ଶୋଇପଡ଼େ । ଡାବୁଲର ମାଆ କେବେ କେମିତି ନିଦ ଯାଇଥିବା ଡାବୁଲକୁ ନିଜ ପାଖକୁ ନିଅନ୍ତି ଆଉ କେବେ କେବେ ସାଗରବାବୁଙ୍କ ବିଛଣାରେ ଡାବୁଲ ଶୁଏ ।

ଦିନେ ହାଟରେ ପରିବା କିଣୁ କିଣୁ ତାଙ୍କ ଅଫିସ ସନାତନ ସହିତ ସାଗର ବାବୁଙ୍କର ସାକ୍ଷାତ ହେଲା । ସନାତନ ଅଫିସ ସଂପର୍କରେ ଅନେକ ନୂଆ କଥା କହିଲେ । ତାଙ୍କ ସମୟର ଅଫିସର ଭିତରୁ ଅନେକ ବଦଳି ହୋଇ ଗଲେଣି । କ୍ୟାଣ୍ଟିନ୍‌ଗୁଡାକ ନୂଆ ବିଲ୍‌ଡିଙ୍ଗକୁ ଉଠିଗଲାଣି । ସଚିବାଳୟର ପ୍ରତି ବିଭାଗରେ ଏବେ ଫାକ୍ସ ଆଉ ଜେରକ୍ସ କିଣାଗଲାଣି । ସଚିବାଳୟର ସମସ୍ତ କର୍ମଚାରୀଙ୍କ ପାଇଁ ନୂଆ ଲାମିନେଶନ କରା ଯାଇଥିବା ପାଶ୍ ମିଳିଲାଣି ।

ପାଶ୍‌ଟା ପକେଟରୁ ବାହାର କରି ସନାତନବାବୁ ଦେଖାଇଲେ । ଅଢ଼େଇ ଇଞ୍ଚରେ ଚାରି ଇଞ୍ଚ ସାଇଜର ଗୋଟିଏ କାର୍ଡରେ ଷ୍ଟାମ୍ପ ଫଟୋଟିଏ ମରାଯାଇ ଲାମିନେସନ କରାଯାଇଛି । ସେଥିରେ ଷ୍ଟିଲର ଗୋଟିଏ ଚେନ୍ ଲାଗିଛି ।

ସାଗରବାବୁ ପ୍ରାୟ ବର୍ଷେ ହେଲା ଆଉ ଅଫିସ ଯାଇ ନାହାଁନ୍ତି । ସିଏ ବର୍ଷଟିଏ ଅଫିସ ନଯିବା ଭିତରେ ଏତେ ପରିବର୍ତ୍ତନ ! ସାଗରବାବୁ ଅଫିସ କଥା ଭାବୁଥିଲେ ସେଇ ପରିବା ଦୋକାନ ଆଗରେ ଠିଆହୋଇ । ସନାତନ ଅନେକ ବେଳୁ ହାଟ ସାରି ଘରକୁ ଫେରିଗଲେଣି । କିନ୍ତୁ ସାଗରବାବୁ ଖାଲି ବ୍ୟାଗ୍‌ଟା ଧରି ସେମିତି ଠିଆ ହୋଇଛନ୍ତି । ପରିବା ଦୋକାନୀ ପାଟିକଲା– କଣ ମଉସା ! ମୋ ଦୋକାନଟା ଆଗରେ ଘଣ୍ଟେ ହେଲା କାହିଁକି ଠିଆ ହେଇଚ ? ଠିଆ ଠିଆ କଣ ଏମିତି ଭାବୁଛ ? ହାଟ ସଉଦା ଚିଠା ଘରେ ଛାଡି ଆସିଛ କି ?

ସାଗରବାବୁ ସ୍ୱପ୍ନରୁ ଉଠିବା ପରି ଚମକି ପଡିଲେ । ଦୋକାନୀ ମୁହଁକୁ ଚାହିଁ ଟିକେ ହସି ଦେଲେ ଆଉ କହିଲେ– ହାଟ ସଉଦା ଚିଠାଟା ହଜିଗଲା । ହଜିଲେ ହଜୁ, ହାଟରୁ ତ ସଉଦା କି ପରିବା ହଜିନେଇଁ ? ଦେ, ମତେ ପରିବା ଦେ ।

ପରିବା କିଣିସାରି ହାତ ଘଣ୍ଟାକୁ ଚାହିଁଲେ ସାଗରବାବୁ । ରାତି ଆଠଟା ବାଜିଲାଣି ।

**ଆନନ୍ଦ ଚନ୍ଦ୍ର ପତି**

ଗାଈ ପାଇଁ କୁଣ୍ଡା, ଚୋକଡ଼ ନେବେ। ସେ ଦୋକାନଟା ଆଠଟାରେ ବନ୍ଦ ହୁଏ। ଶୀଘ୍ର ଶୀଘ୍ର ହାଟରୁ ବାହାରିଗଲେ।

ଘରେ ପହଞ୍ଚିବା ମାତ୍ରେ ତାଙ୍କ ଗାଆଁର ତପନ ତାଙ୍କୁ ନମସ୍କାର କଲା। ତପନ ତାଙ୍କ ଗାଆଁର ମଧୁ ସାଆନ୍ତରାର ପୁଅ। ତପନର ସାନ ଭାଇ ରତନ ରାଉରକେଲାରେ ଇଞ୍ଜିନିୟରିଙ୍ଗ ପଢୁଛି। ତାର ଲୋନ୍ ଷ୍ଟାଇପେଣ୍ଡ୍ କଥା ବୁଝିବାକୁ ଆସିଛି ତପନ। ରତନର ସାଙ୍ଗମାନେ ସମସ୍ତେ ଷ୍ଟାଇପେଣ୍ଡ୍ ଟଙ୍କା ପାଇ ଖର୍ଚ୍ଚ କଲେଣି; କିନ୍ତୁ ରତନ ପାଇନାହିଁ।

ତପନଠାରୁ ଗାଆଁ କଥା ପଚାରି ବୁଝିଲେ ସାଗରବାବୁ। ଗାଆଁର ଅନେକ ଲୋକ ମରି ହଜି ଗଲେଣି। ଗାଆଁକୁ ଏବେ ଆଠଟା ବସ୍ ଚାଲିଛି। ଗାଆଁ ମୁଣ୍ଡ ବରଗଛ ପାଖରେ ଗୋଟେ ଛୋଟକୋଟର ବଜାର ହେଲାଣି। ପରିବା ଦୋକାନ, ଷ୍ଟେସନାରୀ ଦୋକାନ, ଲୁଗା ଦୋକାନ, ଦରଜୀ ଦୋକାନ, ମିଠା ଦୋକାନ, ଗ୍ରସରି ଦୋକାନ, ଏମିତି ଅନେକ ଦୋକାନର ବଜାର ଖୋଲିଛି। ଗାଆଁରୁ ଢେଙ୍କାନାଳ ଆଉ ମଧୁପୁର ଯାଇଥିବା ରାସ୍ତା ଦୁଇଟା ପିଚୁ ହୋଇଗଲାଣି। ଗାଆଁରେ ଗୋଟେ ଭୋକେସନାଲ କଲେଜ ଖୋଲିଛି। ଗାଆଁର ପ୍ରତି ଛକରେ ଟିଉବ ୱେଲ୍ ବସିଛି। ଗାଆଁକୁ ପନ୍ଦରଟା ଟେଲିଫୋନ ପନ୍ଦର ଜଣ ନେଇଛନ୍ତି। ଶୁଣା ଯାଉଛି ଏବର୍ଷ କ'ଣ ପ୍ରତି ଘରକୁ କଳ ପାଣି ଯୋଗାଇ ଦିଆଯିବ।

ଗାଆଁ କଥା କହିସାରି ତପନ କହିଲା- ମୁଁ ତମ ଅଫିସ୍‌କି ପଶି ପାରିଲି ନାହିଁ। ତମ ଘର ନମ୍ବରଟା ମୋର ମନେ ପଡ଼ିଲା ନାହିଁ। ତମ ପୁତୁରା ଜୀବନ କହୁଥିଲା ତମେ କଣ ନଅ ନମ୍ବର ହାଇସ୍କୁଲ ଆଗରେ ରହୁଛ। ସେନିକି ସୂତ୍ର ଧରି ଖୋଜି ଖୋଜି ତୁମ ଘର ପାଇବା ବେଳକୁ ରାତି ହୋଇଗଲା।

ସାଗରବାବୁ କହିଲେ— ଠିକ୍ ଅଛି। କାଲି ତ ରବିବାର। ତୁ ରହ, ପହରିଦିନ ବୁଝିଦେବା।

ସୋମବାର ଦିନ ତପନକୁ ସାଙ୍ଗରେ ଧରି ଠିକ ଦଶଟା ବେଳେ ସଚିବାଳୟ ଗେଟ୍ ପାଖରେ ପହଞ୍ଚିଲେ। ତପନଠାରୁ ରେଫରେନ୍ସ କାଗଜ ନେଇ ତାକୁ ଗେଟ୍ ଆଗ ଗଛ ଛାଇରେ ଠିଆ ହେବାକୁ କହି ସାଗରବାବୁ ସଚିବାଳୟ ଭିତରକୁ ପଶିବା ବେଳେ ଗେଟ୍ ଜଗିଥିବା ପୋଲିସ ତାଙ୍କୁ ପାଶ୍ ମାଗିଲା। ସାଗରବାବୁ ତାଙ୍କ ପୁରୁଣା ପ୍ରବେଶପତ୍ରଟା ପ୍ୟାକଟରୁ ଖୋଲି ଦେଖାଇଲେ। ପୋଲିସ ସେ ପାଶ୍‌ଟା ଜବତ କରି କହିଲେ- ଏ ପାଶ୍ ଆଉ ଚଳୁ ନାହିଁ। ନୂଆ ପାଶ୍ ଦେଖାନ୍ତୁ।

ସାଗରବାବୁ ଅଭିଯୋଗ କଲେ- ମୁଁ ଚାକିରିରେ ଥିବାବେଳେ ଆମକୁ ଏଇ ପାଶ୍ ମିଳିଥିଲା । ନୂଆ ପାଶ୍ ମିଳିନାହିଁ ।

ପୋଲିସ୍ ରୋକଠୋକ ମନାକରି ଦେଲା । ଆପଣ ଆଜିକି ଦେଢ଼ ବର୍ଷ ହେଲା ସରକାରୀ ଚାକିରିରୁ ଅବସର ଗ୍ରହଣ କଲେଣି । ଆପଣ ଅବସର ଗ୍ରହଣର ଚାରିମାସ ପରେ ଆପଣଙ୍କ ପ୍ରବେଶପତ୍ରଟି ସମର୍ପଣ କରିଦେବା କଥା । ଏ ପାଶ୍ ଜବତ କରାଗଲା । ଆପଣ ଏ ପ୍ରବେଶପତ୍ରରେ ଆଉ ଭିତରକୁ ପଶି ପାରିବେ ନାହିଁ ।

ସାଗରବାବୁଙ୍କ ଛାତିରେ କଣ ଗୋଟେ ଚାଉଁକରି ଗଳିଗଲା । ଦୀର୍ଘ ୩୫ ବର୍ଷ ଧରି ନିଜର ସମସ୍ତ ଶକ୍ତି ଦେଇ ସେ ଯେଉଁ ଅଫିସିରେ କାମ କରିଥିଲେ, ଆଜି ସେଇ ଅଫିସ୍‌କୁ ପ୍ରବେଶ ଅଧିକାର ତାଙ୍କଠୁ କାଢ଼ି ନିଆଯାଇଛି । ନିଜ ଘର ଭିତରକୁ ନିଜେ ପ୍ରବେଶ ଅଧିକାର ଭିକ୍ଷା କରିବା ପରି ସାଗରବାବୁ ପୋଲିସକୁ ନିବେଦନ କଲେ- ମୋର ଆଜି ନିହାତି ଗୋଟେ ଜରୁରୀ କାମ ଅଛି । ଟିକେ ଛାଡି ଦିଅ ମୁଁ ଯାଏ ।

ପୋଲିସ ମୁଣ୍ଡ ହଲାଇଲା- ନା, ମୁଁ ବିନା ପ୍ରବେଶପତ୍ରରେ ଛାଡ଼ି ପାରିବି ନାହିଁ । ଆପଣ ଯାଆନ୍ତୁ, ରିସେପସନିଷ୍ଟ ପାଖରୁ ଟେମ୍ପୋରାରୀ ପାଶ୍ ଆଣନ୍ତୁ ।

ଲଜ୍ଜା, ଅପମାନ କ୍ଷୋଭରେ ସାଗର ବାବୁଙ୍କ ମୁହଁଟା ସନ୍ଧ୍ୟା ଆକାଶ ପରି ଲାଲ ପଡିଗଲା । ରିସେପସନିଷ୍ଟକୁ କଣ କହି ସିଏ ନିଜ ପାଇଁ ଟେମ୍ପୋରାରୀ ପ୍ରବେଶ୍ ପତ୍ର ମାଗିବେ ?

ଆଉ ଥରେ ପୋଲିସକୁ ଅନୁରୋଧ କଲେ ସାଗରବାବୁ । ପୋଲିସ ତାଙ୍କ ଉପରେ ଏଥର ବିରକ୍ତ ହେଲା-

ଆପଣଙ୍କୁ ପରା ଥରେ ମନାକଲି ! ନା, ହୋଇ ପାରିବ ନାହିଁ । ଆପଣ ରିସେପସନିଷ୍ଟ ପାଖରୁ ପାଶ ଆଣନ୍ତୁ । ଉଠିଲେ, ଆଗରୁ ଉଠିଲେ ।

ପୋଲିସ୍ ସାଗରବାବୁଙ୍କ ହାତ ଧରି ଗେଟ୍ ଆଗରୁ ଠେଲି ଦେଲା । ସାଗରବାବୁ ତାଙ୍କ ଚାରିକଡ଼କୁ ଚାହିଁଲେ, କିଛି ଲୋକ ଏ ଦୃଶ୍ୟ ଦେଖିବା ପାଇଁ ଜମା ହୋଇ ଗଲେଣି । ସେଥିରୁ ଅନେକ ମୁହଁ ସାଗରବାବୁଙ୍କର ପରିଚିତ । ସାଗରବାବୁଙ୍କ ମୁହଁ ଅପମାନରେ ବିବର୍ଣ୍ଣ ଦିଶିଲା । ତାଙ୍କ ଚାରିପାଖରେ ଏତେ ସଂଖ୍ୟାରେ ସଚିବାଳୟ ଲୋକଙ୍କୁ ଦେଖି ତାଙ୍କ ଭିତରେ ସାହସ ବଢ଼ିଗଲା । ସାଗରବାବୁ ଶାର୍ଦ୍ଦୁଳ ପରି ଭୟଙ୍କର ମୁଖଭଙ୍ଗୀ କରି ପୋଲିସକୁ ଖାତିର ନ କରି ଗେଟ୍ ଆଡ଼କୁ ମାଡ଼ି ଆସିଲେ । ଗେଟ୍‌ରେ ଥିବା ଦୁଇ ଜଣ ଯାକ ପୋଲିସ ଏକାଠି ମିଶି ସାଗରବାବୁଙ୍କୁ ଠେଲାପେଲା

କଲେ । ସାଗରବାବୁ ସଚିବାଳୟର ଅନ୍ୟ କର୍ମଚାରୀମାନଙ୍କ ସାହାଯ୍ୟ ପାଇବା ଆଶାରେ ଚାରିପଟରେ ଜମିଥିବା କର୍ମଚାରୀମାନଙ୍କୁ ଚାହିଁଲେ । ରୁଣ୍ଡ ହୋଇଥିବା କର୍ମଚାରୀମାନେ କିଛି ଗୋଟେ ବିପଦ ଆଶଙ୍କା କରି ନିରାପଦ ସ୍ଥାନ ଉଦ୍ଦେଶ୍ୟରେ ଗୋଡ ବଢ଼ାଇ ସାରିଥିଲେ । କିଛି ଗୋଟେ ଘଟିଲେ ଭୁବନେଶ୍ୱର ଲୋକମାନେ ଏମିତି ଅଦମ୍ୟ ଉତ୍ସୁକତା ନେଇ ରୁଣ୍ଡ ହୁଅନ୍ତି, କିନ୍ତୁ ସାମାନ୍ୟ ବିପଦର ଛିଟିକି ପଡ଼ିବାର ଆଶଙ୍କା ଦେଖିଲେ ଖୁବ୍ ଶୀଘ୍ର ସେ ସ୍ଥାନ ଛାଡ଼ି ନିରାପଦ ଦୂରତାକୁ ଘୁଞ୍ଚିଯାଆନ୍ତି ।

ଗେଟ୍‌ରେ ବିନା ପ୍ରବେଶପତ୍ରରେ ସଚିବାଳୟ ଭିତରକୁ ପ୍ରବେଶ ପାଇଁ ଜୁଲୁମ କରିବା ଅପରାଧରେ ସାଗରବାବୁଙ୍କୁ ଦୁଇଜଣ ବଳିଷ୍ଠ କନେଷ୍ଟବଳ ମାଡ଼ି ବସି କାବୁ କରି ନେଲେ । ପ୍ରବେଶ ଗେଟ୍ ପାଖରୁ ସାଗରବାବୁଙ୍କ କଲର ଧରି ସଚିବାଳୟ ଭିତରେ ଥିବା ପୋଲିସ ସର୍ଜେଣ୍ଟ ପାଖକୁ ଟାଣି ଟାଣି ନେଲେ ।

ସାଗରବାବୁଙ୍କୁ ପୋଲିସ ଟାଣି ଟାଣି ନେଉଥିବା ବେଳେ ସଚିବାଳୟର ଅନେକ କୌତୂହଳୀ ଆଖି ଝରକା ଫାଙ୍କରୁ, ପିଣ୍ଡା ଉପରୁ, ଚା, ପାନ, ଜଳଖିଆ ଦୋକାନରୁ ତାଙ୍କୁ ଚାହିଁଥିଲା । ସାଗରବାବୁଙ୍କ ଚାରିପଟେ ଭିଡ ଜମାଇ ଆଉ ଦଳେ ଲୋକ ପୋଲିସ୍ ସଙ୍ଗେ ସଙ୍ଗେ ଚାଲିଥିଲେ ।



# ସ୍ୱାଧୀନତା ସଂଗ୍ରାମୀ

ମୁକ୍ତାବୁଢ଼ୀର ବୟସ ୭୫ ବର୍ଷ। ଗୌର ଦେହ, ଦୀର୍ଘ ଶରୀର। ମଦନପୁର ବୁଢ଼ୀର ଶାଶୂଘର ନୁହେଁ, ବାପଘର। ଅନେକ ବର୍ଷ ତଳୁ ସିଏ ଶାଶୂଘର ଛାଡ଼ି ବାପଘର ଗାଆଁରେ ରହୁଛି। ଏକା ରହୁଛି। ଶାଶୂଘର ଗାଆଁରେ ନିଜର ଆଉ କେହି ନାହିଁ। ବାପ ଘରର କାହା ସହିତ ସଂପର୍କ ନାହିଁ। ବୁଢ଼ୀ ନିଜ ହାତରେ ଫୁଟାଇ ଖାଏ।

ସ୍ୱାଧୀନତା ସଂଗ୍ରାମୀ ଭତ୍ତା ପାଇବା ପାଇଁ ବୁଢ଼ୀ ନାଆଁରେ କାଗଜ ଆସିବା ଦିନୁ ବୁଢ଼ୀ ବିଷୟରେ ମଦନପୁର ଗାଆଁ ସାରା ଆଲୋଚନା ଚାଲିଛି। ପୋଖରୀ ତୁଠରେ, ଗାଆଁ ଦାଣ୍ଡରେ, ଭାଗବତଘର ପିଣ୍ଡାରେ, ଏମିତି ଅନେକ ସ୍ଥାନରେ ଚୁପ୍‌ଚାପ୍, ଫୁସ୍‌ଫାସ– ମୁକ୍ତା ବୁଢ଼ୀ ଆଉ ସ୍ୱାଧୀନତା ସଂଗ୍ରାମ? କେଉଁଠି କ'ଣ ଭୁଲ୍‌ଭାଲ୍ ହୋଇଯାଇଛି ବୋଧହୁଏ।

ଆଉ କେତେକ କହିଲେ– ବୁଢ଼ୀ ସିନା ଆମ ଗାଆଁରେ ଥିବାବେଳେ କିଛି କରିନାହିଁ, ହେଲେ ସିଏ ଯେଉଁ ସମୟତକ ତା' ଶାଶୂଘର ଗାଆଁରେ କଟାଇଛି, ସେତେବେଳେ ଯଦି କିଛି କରିଥାଏ, ସେ କଥା କିଏ କହିବ?

ସ୍ୱାଧୀନତା ସଂଗ୍ରାମୀ ମୁକ୍ତାଦେବୀ ମନ୍ତ୍ରୀଙ୍କ ଉପସ୍ଥିତିରେ ଜିଲ୍ଲାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଗୌରହରି ସାହୁଙ୍କ ହସ୍ତରୁ ତାମ୍ରଫଳକ ଓ ମାନପତ୍ର ଗ୍ରହଣ କରିବେ। ମଦନପୁର ମେଳଣ ପଡ଼ିଆରେ ମଞ୍ଚ ସୁସଜ୍ଜିତ। ଚାରିଆଡେ ରଙ୍ଗିନ୍ କାଗଜରେ ତ୍ରିରଙ୍ଗା ପତାକାମାନ ଖଞ୍ଜା ଯାଇଛି। ମାଇକ୍ ଓ ଲାଇଟ୍‌ର ବ୍ୟବସ୍ଥା କରାଯାଇଛି।

ସଭାମଞ୍ଚ ଚାରିପଟେ ପାଖ, ଆଖ ଦଶଖଣ୍ଡ ଗାଆଁର ଲୋକମାନେ ରୁଣ୍ଡ ହୋଇଛନ୍ତି। ମେଳଣ ପଡ଼ିଆଟା ମେଳଣ ଉତ୍ସବ ପରି ଗହଳ ଚହଳ।

ଆନନ୍ଦ ଚନ୍ଦ୍ର ପହି

ସମ୍ବର୍ଦ୍ଧନା ସଭାକୁ ଆସିବାକୁ ମୁକ୍ତାଦେବୀ ଅନିଚ୍ଛା ପ୍ରକାଶ କଲେ। ତାଙ୍କୁ ଲୋକମାନେ ବୁଝାସୁଝା କରି ବହୁ କଷ୍ଟରେ ମଞ୍ଚ ଉପରକୁ ଆଣିଲେ। ମଞ୍ଚକୁ ଆସିବାରେ କୁଣ୍ଠିତଭାବ ଦେଖି କେତେକ କହିଲେ– ମହତ୍ ମଣିଷ ସର୍ବଦା ବିନୟୀ ହୁଏ।

ମନ୍ତ୍ରୀଙ୍କ ପୌରୋହିତ୍ୟରେ ସଭାକାର୍ଯ୍ୟ ଆରମ୍ଭ ହେଲା। ସଭାର କାର୍ଯ୍ୟସୂଚୀ ଅନୁସାରେ ମନ୍ତ୍ରୀ, ମୁକ୍ତାଦେବୀ ଓ ଗୌରହରି ବାବୁଙ୍କୁ ଫୁଲତୋଡ଼ା ଦିଆଗଲା। କେତୋଟି ଅଳ୍ପ ବୟସର ଝିଅ ସ୍ୱାଗତ ସଂଗୀତ ଗାଇଲେ।

ମନ୍ତ୍ରୀଙ୍କ ନିର୍ଦ୍ଦେଶକ୍ରମେ ଜିଲ୍ଲାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ମୁଖ୍ୟ ଅତିଥି ଗୌରହରି ସାହୁ ତାଙ୍କ ଭାଷଣ ଦେବାକୁ ଠିଆ ହେଲେ। ସେ ଭାଷଣ ପ୍ରସଙ୍ଗରେ ନିଜେ କରିଥିବା ଲୋମହର୍ଷଣକାରୀ ସ୍ୱାଧୀନତା ସଂଗ୍ରାମ କଥା ବର୍ଣ୍ଣନା କରି ଉପସ୍ଥିତ ଲୋକମାନଙ୍କୁ ଚମକାଇ ଦେଲେ। ସେ କେଉଁ ଜେଲ୍‌ରେ କେତେବର୍ଷ କଟାଇ ଥିଲେ, କେଉଁଠି ମହାତ୍ମାଗାନ୍ଧୀଙ୍କ ସହିତ, କେଉଁଠି ନେହେରୁଙ୍କ ସହିତ, ଆଉ କେଉଁଠି ଜୟପ୍ରକାଶଙ୍କ ସହିତ ଏକତ୍ର କାରାବାସ କରିଥିଲେ ତାହାର ଟିକିନିଖି ବିବରଣୀ ଖୁବ୍ ଜୀବନ୍ତ ଭାବରେ ଉପସ୍ଥାପନ କଲେ। ସେ କେମିତି ଜେଲ୍‌ରେ ପ୍ରଚଳିତ ପଥୁରି ବାସନ ପରିବର୍ତ୍ତେ କଂସା ପିତଳ ବାସନ ପ୍ରଚଳନ ପାଇଁ ଆମରଣ ଅନଶନ କରି ସଫଳ ହୋଇଥିଲେ, ତାଙ୍କ ମୁହଁରୁ ଇଂରେଜ ସରକାରଙ୍କ ଜୟଧ୍ୱନି କାଢ଼ିବା ପାଇଁ ତାଙ୍କ ହାତ ଦୁଇଟାକୁ ଲୁହା ଶିକୁଳିରେ ଟାଙ୍ଗିଦେଇ ତଳୁ କିପରି ବେତ୍ରାଘାତ କରାଯାଇଥିଲା ଓ ପ୍ରତିଥର କିପରି ତାଙ୍କ ପାଟିରୁ ବାହାରିଥିଲା—"ଭାରତମାତା କି ଜୟ", "ମହାତ୍ମାଗାନ୍ଧୀକି ଜୟ।"

ଲୋକମାନେ ଆଗ୍ରହର ସହିତ ଅପେକ୍ଷା କରିଛନ୍ତି ମୁକ୍ତାଦେବୀଙ୍କ ସ୍ୱାଧୀନତା ସଂଗ୍ରାମ କାହାଣୀ ଶୁଣିବାକୁ। ଗୌରହରି ବାବୁଙ୍କ ଭାଷଣ ଅଯଥା ଲମ୍ବା ହେଉଥିବାରୁ ଉପସ୍ଥିତ ସମସ୍ତଙ୍କ ମୁହଁରେ ବିରକ୍ତି ଭାବ ଫୁଟିଉଠିଲା। ସଭାରୁ ଅସନ୍ତୋଷର ଗୁଞ୍ଜରଣ ଶୁଭିଲା। ମନ୍ତ୍ରୀ ଛୋଟ କାଗଜରେ ଖଣ୍ଡେ ଚିଠା ଲେଖି ଗୌରହରିବାବୁଙ୍କ ହାତକୁ ବଢ଼େଇ ଦେଲେ। ସେଥିରେ ଲେଖାଥିଲା —ଆପଣ ଅଧିକ ଭାବପ୍ରବଣ ହୋଇ ଯାଉଛନ୍ତି। ଭାଷଣ ସଂକ୍ଷିପ୍ତ କରନ୍ତୁ।

ଭାଷଣର ଉତ୍ତାପରେ ଉତ୍ତପ୍ତ ହୋଇଥିବା ଗୌରହରିବାବୁ ନିଜକୁ ଯଥା ସମ୍ଭବ ସଂଯତ କରି ସଭା ଭିତରେ ବସିଥିବା ମଣିଷମାନଙ୍କ ମୁହଁକୁ ଚାହିଁଲେ। କାହାରି ମୁହଁରେ କିଛି ହେଲେ ଭାବାନ୍ତର ନାହିଁ। କେବଳ ସେ ହିଁ ରଡ଼ନିଆଁ ପରି ଡ଼ହକୁଛନ୍ତି। ତାଙ୍କ ନାକ ପୁଡାରୁ ଖର ଗରମ ପବନ ବାହାରୁଛି। କିଛି ମୁହୂର୍ତ୍ତ ଅଟକିଯାଇ ନିଜକୁ ଆୟତ୍ତ କଲେ ଗୌରହରିବାବୁ।

ଆନନ୍ଦ ଚନ୍ଦ୍ର ପହି

ଗୌରହରିବାବୁ ସ୍ୱାଧୀନତା ସଂଗ୍ରାମୀ ମାନପତ୍ର ଓ ତାମ୍ରଫଳକ ମନ୍ତ୍ରୀଙ୍କ ହାତରୁ ଗ୍ରହଣ କରି ମୁକ୍ତାଦେବୀଙ୍କୁ ପ୍ରଦାନ କଲେ।

କିଛି ସମୟ ପାଇଁ କେବଳ କରତାଳି। କରତାଳି ଶବ୍ଦରେ ସଭାମଞ୍ଚ ମୁଖରିତ ହେଲା। ମୁକ୍ତାଦେବୀଙ୍କ ଜୟଗାନ, ହରିବୋଲ୍, ହୁଳହୁଳିରେ ସଭାସ୍ଥଳ କଂପି ଉଠିଲା।

ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଓ ସମ୍ମାନର ଉତ୍ତରରେ ମୁକ୍ତାଦେବୀଙ୍କ ଭାଷଣ ଶୁଣିବାକୁ ସମୁଦାୟ ସଭା ଅପେକ୍ଷା କରି ରହିଲା। ସମସ୍ତଙ୍କ କାନ ଠିଆ ଠିଆ। କିପରି ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ସେ ଘର ସଂସାର ଛାଡ଼ି ସତ୍ୟାଗ୍ରହୀ ହେଲେ ? କେଉଁ ଆଶ୍ରମରେ ଅରଟରେ ସୂତା କାଟିଲେ ? କେତେ ବଡ଼ ଆଇନ ଅମାନ୍ୟ ଆନ୍ଦୋଳନର ନେତୃତ୍ୱ ନେଲେ ? କେଉଁଠି କେଉଁ ଜାତୀୟ ସ୍ତରର ନେତାମାନଙ୍କ ସହିତ କାରାବରଣ କଲେ ଇତ୍ୟାଦି ଅନେକ କଥା ଶୁଣିବା ଆଶାରେ ଲୋକମାନେ ନୀରବରେ ଅପେକ୍ଷା କଲେ।

ସଭା ଚୁପ୍‌ଚାପ୍। ମନ୍ତ୍ରୀ ମୁକ୍ତାଦେବୀଙ୍କୁ ଅନୁରୋଧ କଲେ କିଛି କହିବାକୁ। କିନ୍ତୁ ମୁକ୍ତାଦେବୀ ଚୁପ୍‌ଚାପ୍। ମନ୍ତ୍ରୀ ଦୁଇଜଣ ଯୁବକଙ୍କୁ ପାଖକୁ ଡାକି କହିଲେ—ବୋଧହୁଏ ବୟସାଧିକ୍ୟ ଯୋଗୁ ମୁକ୍ତାଦେବୀ ଉଠିପାରୁ ନାହାଁନ୍ତି। ତାଙ୍କୁ ଧରାଧରି କରି ଠିଆ କରାଅ।

ତଥାପି ବୁଢ଼ୀର କିଛି ପ୍ରତିକ୍ରିୟା ନାହିଁ। ଠିଆ ହେବାକୁ ବୁଢ଼ୀ ନାରାଜ। କିଛି କହିବାକୁ ମୋଟେ ପ୍ରସ୍ତୁତ ନୁହଁ। ମନ୍ତ୍ରୀ କହିଲେ— ଆପଣ ସେମିତି ବସି କରି କୁହନ୍ତୁ। ଯେମିତି ହେଲେ ଆପଣଙ୍କୁ କିଛି କହିବାକୁ ପଡ଼ିବ। ସବୁ ଲୋକ ଆପଣଙ୍କ ସ୍ୱାଧୀନତା ସଂଗ୍ରାମ କଥା ଶୁଣିବାକୁ ଅପେକ୍ଷା କରିଛନ୍ତି।

ବୁଢ଼ୀ ମୁଣ୍ଡ ହଲାଇ , ହାତ ହଲାଇ ମନା କଲା। କିଛି କହିବା ପରି ଦକ୍ଷତା ନାହିଁ ବୋଲି ଅକ୍ଷମତା ପ୍ରକାଶ କଲା। ତଥାପି ଲୋକମାନଙ୍କ ଭିତରୁ କଟାକ୍ଷ ଶୁଭିଲା— ନାଇଁ, ନାଇଁ ଆପଣଙ୍କୁ କହିବାକୁ ହେବ। ଯାହାହେଲେ କିଛି କୁହନ୍ତୁ।

ମୁକ୍ତାଦେବୀ ଅନନ୍ୟୋପାୟ ହୋଇ ଗଳା ଝାଡ଼ି ଆରମ୍ଭ କଲେ—ମୁଁ ଦେଶ ପାଇଁ ଆଦୌ ଲଢ଼େଇ କରିନାହିଁ।

ମନ୍ତ୍ରୀ କହିଲେ— ଆପଣ ଆମକୁ ଫାକି ଦେଇ ପାରିବେ ନାହିଁ। ଆପଣ ଯଦି ସ୍ୱାଧୀନତା ସଂଗ୍ରାମ କରି ନାହାଁନ୍ତି, ତାହେଲେ ଜେଲ୍ ଗଲେ କେମିତି ? ଆପଣ ଜେଲ୍ ଯିବା କଥା କ'ଣ ମିଛ ?

ମୁକ୍ତାଦେବୀ ଗମ୍ଭୀର ହୋଇଯାଇ କହିଲେ—ମୁଁ ଜେଲ୍ ଯିବା କଥା ସତ। ହେଲେ ମୁଁ ଦେଶ ପାଇଁ ଲଢ଼େଇ କରି ଜେଲ୍ ଯାଇନାହିଁ।

ଆନନ୍ଦ ଚନ୍ଦ୍ର ପତି

ସଭାରେ ଏଥର ଥମ୍ ଥମ୍ ଭାବ। ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଗୋଟିଏ ନୂତନ ରହସ୍ୟ ଉଦ୍‌ଘାଟନେ ପାଇଁ ଉତ୍‌କଣ୍ଠିତ ହୋଇ ରହିଲେ।

ବୁଢୀ ଲାଜ ଲାଜ ହେଲା। ଦାନ୍ତହୀନ ପାଟି, ଗାତୁଆ ଗାଲ, ଶୁଖୁଟା ଓଠରେ ଲାଜ ଲାଜ ଭାବ ପେଟ୍ରୋମାକ୍ସ ଲାଇଟ୍‌ରେ ଅପୂର୍ବ ଅପୂର୍ବ ଦେଖାଗଲା। ବୁଢୀ ଟିକେ ଅଟକି ଯାଇ ଛେପ ଢୋକି କହିଲା– ସିଏ ବହୁତ ଦିନ ତଳର କଥା। ମୋ ସ୍ୱାମୀ ଜଣେ ଉ.ପ୍ରା. ସ୍କୁଲ ମାଷ୍ଟର ଥିଲେ। ମୋ ଶାଶୂଘର ଗାଆଁ ଓଲଟବଂଶୀପୁରଠାରୁ ବହୁତ ଦୂରରେ କେନ୍ଦୁଝର ଜିଲ୍ଲାର ଗୋଟିଏ ମଫସଲ ସ୍କୁଲରେ ସେ ଚାକିରି କରୁଥିଲେ। ଘରେ ମୋ ଶାଶୂ ଆଉ ମୁଁ କେବଳ ଦୁଇଜଣ ରହୁଥିଲୁ। ସେତେବେଳେ ମୋର ପିଲାପିଲି ହେବାର ଥିଲା। ମୋ ଶାଶୂ କହିଲେ ମଣ୍ଡାପିଠା କରିବା ପାଇଁ। ଛେନା ଆଉ ନଡ଼ିଆ ପୁର ଦେଇ କଅଁଳ ଛନ ଛନ ମଣ୍ଡାପିଠା କଲି। ଶାଶୂଙ୍କୁ ଦେଲି, ସାଇପଡ଼ିଶାରେ ବାଣ୍ଟିଲି, ମୁଁ ନିଜେ ଖାଇଲି। ଆଉ ପୁଞ୍ଜେ ମଣ୍ଡା ଶାଶୂ ରଖିଥିଲେ କାଳେ ତାଙ୍କ ପୁଅ ଚାକିରିରୁ ଆସିଯିବ। ସିଏ ଏମିତି ଶନିବାରିଆ ଅକୁହା ଅପୁଛା ବେଳେବେଳେ ଆସନ୍ତି। କିନ୍ତୁ ଅନେଇଁ ଅନେଇଁ ଶନିବାର ରାତି ବାରଟା ହେଲା, ସେ ଆସିଲେ ନାହିଁ। ରାତିରେ ଶାଶୂ ନିଦରେ ଶୋଇବା ପରେ ମୋର ଭାରି ଇଚ୍ଛା ହେଲା। ମନ ଡ଼ାକିଲା। ମୁଁ ଲୁଚିଛପି ଯାଇ ପୁଞ୍ଜାକ ମଣ୍ଡା ଖାଇଦେଲି। ଶେଷ ପିଠାଟି ଖାଉଛି, ଆଗରେ ଆସି ଠିଆ ହେଲେ ମୋ ଶାଶୂ। ଛାଞ୍ଚୁଣୀ, ପହଁରା ଧରି ପିଟି ପିଟି ମୋ ପିଠି ଫଟାଇ ଦେଲେ। ରାତିଯାକ କାନ୍ଦିଲି।

ପାହାନ୍ତାରୁ ଉଠିଲି। ମୋ ବେଦ୍ଦାଣ ଦିଖଣ୍ଡ ପୁଟୁଳି କରି କାଖରେ ଜାକି ଘରୁ ଗୋଡ଼ କାଢ଼ି ପଦାକୁ ବାହାରି ଆସିଲି। ସେତେବେଳକୁ ଫରଚା ହୋଇ ନଥିଲା। ଅଚ୍ଚବାଟ ଯାଇଚି କି ନାହିଁ ଗୋଟେ ଗୋରା ପୁଲିସ ମତେ ଅଟକେଇଲା। ପଚାରିଲା—କୁଆଡ଼େ ଯାଉଚ? ତମେ ଜଣେ ସତ୍ୟାଗ୍ରହୀ। ତମକୁ ଗିରଫ କରାଗଲା।

ସେତେବେଳକୁ ଆମ ଅଞ୍ଚଳରେ ଏମିତି କୁଆଡ଼େ ଗୋଟେ ଆଇନ୍ ଜାରି କରିଥିଲେ ଗୋରା ସରକାର—ଯିଏ ଗାନ୍ଧୀ ଡାକରାରେ ସତ୍ୟାଗ୍ରହୀ ହୋଇ ବାହାରୁଥିଲା ତାକୁ ଗୋରା ଫଉଜ ବାନ୍ଧି ନେଉଥିଲେ।

ସେତେବେଳ ସତ୍ୟାଗ୍ରହୀମାନଙ୍କମଙ୍କବେଶ ପୋଷାକ ସହିତ ମୋ ବେଶ କୁଆଡେ ମେଳ ଖାଉଥିଲା। ସତ୍ୟାଗ୍ରହୀମାନଙ୍କ ପରି ମୁଁ କାଖରେ ଜାକିଥିଲି ଗୋଟେ ଛୋଟ ଲୁଗା ଗଣ୍ଠିଲି।

ମତେ ସେମାନେ ଗିରଫ କରି ଗୋଟେ ଦିନ ଗୋଟେ ରାତି ଥାନାରେ ଅଟକାଇଲେ। ଇଆଡୁ ସିଆଡୁ କେତେ କଥା ପଚାରିଲେ। ମୁଁ ଏ ମଣ୍ଡାଖିଆ

କଥା କାହା ଆଗରେ ଭଲା କହିପାରି ଥାଆନ୍ତି ? ମୁଁ ଚୁପ୍ ରହିଲି। ସେମାନେ ମତେ ଜେଲ୍‌କୁ ପଠାଇ ଦେଲେ। ଶାଶୂଘରେ ମତେ କେହି ଖୋଜିଲେ ନାହିଁ। ଶାଶୂବୁଢ଼ୀ କେବଳ କନ୍ଦାକଟା କରି ରହିଲେ।

ମୁଁ ଜେଲ୍‌ରେ ପନ୍ଦର ଦିନ ରହିବା ପରେ ମତେ ଆଉ ଥରେ ପଚରା ପଚରି କଲେ। ମତେ ମାଡ଼ ଦେଲେ। ତଥାପି ମୁଁ କିଛି କହିଲି ନାହିଁ। ଗୋଟେ ଗୋରା ସିପେଇ ରାଗରେ ମୋ ପେଟକୁ ଗୋଟେ ଗୋଇଠା ମାରିଲା। ମତେ ଭାରି କାଟିଲା। ମୁଁ ବିକଳ ହେଲି। ମତେ ଡାକ୍ତରଖାନାକୁ ନିଆଗଲା। ସେଠି ମୁଁ ଚାରିଦିନ ରହିଲି। ମୋ ପେଟର ପିଲାଟା ନଷ୍ଟ ହୋଇଗଲା। ତାପରେ ସେମାନେ ମୋତେ ଛାଡ଼ିଦେଲେ। ମୁଁ ଚାଲି ଆସିଲି।

ମୋ ଶାଶୂ ଓ ସ୍ୱାମୀ ମୋତେ ଆଉ ଘରକୁ ନେଲେ ନାହିଁ। ଏତେ ଦିନ ଥାନା ଓ ଜେଲ୍‌ରେ କଟାଇଥିବା ସ୍ତ୍ରୀଲୋକକୁ ଘରକୁ ନେବାକୁ ସେମାନେ ରାଜି ହେଲେ ନାହିଁ। ଅଳ୍ପଦିନ ପରେ ମୋ ସ୍ୱାମୀ ସାପ କାମୁଡ଼ାରେ ମରିଗଲେ। ତାଙ୍କୁ ଝୁରିଝୁରି ଶାଶୂ ବି ଚାଲିଗଲେ। ମୁଁ ସେଇ ଦିନଠୁ ମୋ ବାପଘର ଗାଆଁରେ ପଡ଼ିଛି।

ବୁଢ଼ୀର କଥା ଶୁଣି ସମୁଦାୟ ସଭା ସ୍ତବ୍ଧ ହୋଇଗଲା। ସମସ୍ତଙ୍କ କଳ୍ପନା, ସମ୍ଭାବନା ଓ ଆଶଙ୍କାର ଚଉହଦି ଡେଇଁ କେମିତି ଗୋଟେ ଅଜବ ଜାଗାରେ ସମସ୍ତଙ୍କୁ ନେଇ ପହଞ୍ଚାଇ ଦେଲା ତା କଥା। ସେଠୁ ଫେରିବାକୁ କେହି ବାଟ ପାଉ ନାହାଁନ୍ତି। ସମସ୍ତେ କେବଳ ପରସ୍ପର ମୁହଁକୁ ଚାହୁଁଛନ୍ତି। କାହାରି ମୁହଁରେ କଥା ନାହିଁ।

ବୁଢ଼ୀ କହିସାରି ଆଖିରୁ ଲୁହ ପୋଛିଲା। ସ୍ୱାଧୀନତା ସଂଗ୍ରାମୀ ଗୌରହରି ବାବୁ ଅବାକ, ଘାଣ୍ଟୁ। ମନ୍ତ୍ରୀ ତାଙ୍କ ଭାଷଣ ଦେବା ପାଇଁ ଠିଆ ହେଲେ। ଏ ଅଦ୍‌ଭୁତ ପରିସ୍ଥିତିରେ ମନ୍ତ୍ରୀ କ'ଣ କହିବେ ଶୁଣିବାକୁ ସମସ୍ତେ ଅନାଇ ରହିଲେ। ମନ୍ତ୍ରୀ ପକେଟ୍‌ରୁ ରୁମାଲ କାଢ଼ି ପ୍ରଥମେ ମୁହଁ ପୋଛିଲେ। ମନେହେଲା ସତେ ଯେମିତି ତାଙ୍କ ମୁହଁ ଉପରେ ବସିଯାଇଥିବା ଗୋଟେ ଥମ୍ ଥମ୍ ଭାବର ଆସ୍ତରଣକୁ ରୁମାଲ୍‌ରେ ରଗଡ଼ି ପୋଛି ପରିଷ୍କାର କରିଦେଲେ। କଣ୍ଠ ଉପରେ ଜମି ଆସିଥିବା କଫକୁ ତରଳ କରିବା ପାଇଁ ଟେବୁଲ୍ ଉପରେ ଥୁଆ ହୋଇଥିବା ଗ୍ଲାସରୁ ଢୋକେ ପାଣି ପିଇ ଭାଷଣ ଆରମ୍ଭ କଲେ— ଆପଣମାନେ ସମସ୍ତେ ଜାଣନ୍ତି ଆମ ଦେଶରୁ ଗୋରା ସରକାର ଅନେକ ବର୍ଷ ହେଲା ହଟି ଗଲାଣି। ଆମେ ସବୁ ବର୍ତ୍ତମାନ ସ୍ୱାଧୀନ। କିନ୍ତୁ ମୁଁ ଦୃଢ଼ତାର ସହିତ କହିବି ଆମ ସମସ୍ତଙ୍କର ଧାରଣା ଭୁଲ୍। ଶତକଡ଼ା ଶହେ ଭୁଲ୍।

ଆନନ୍ଦ ଚନ୍ଦ୍ର ପହି

ସଭାରେ ପୁଣି ଏକ ଆଶ୍ଚର୍ଯ୍ୟ ଭାବ ଖେଳିଗଲା। ମନ୍ତ୍ରୀ କହୁଛନ୍ତି ଆମେ ବର୍ତ୍ତମାନ ସ୍ୱାଧୀନ ନୁହଁ। ସମସ୍ତେ ବଲ୍ ବଲ୍ କରି ପରସ୍ପର ମୁହଁକୁ ଚାହିଁଲେ।

ମନ୍ତ୍ରୀ ତାପରେ କହିଲେ—ମୋ କଥା ଆପଣମାନେ ହୁଏତ୍ ବୁଝିପାରୁ ନାହାଁନ୍ତି। ଆମେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସଂଗ୍ରାମ କରି ଆମ ଦେଶର ରାଜନୈତିକ ସ୍ୱାଧୀନତା ପାଇଛୁ। କିନ୍ତୁ ଆମେ ବର୍ତ୍ତମାନ ଅନେକ ଦିଗରୁ ପରାଧୀନ। ଆମେ ଅର୍ଥନୈତିକ ସ୍ୱାଧୀନତା ଲାଭ କଲେଣି କି? ଆମର ନାରୀ ସ୍ୱାଧୀନତା ମିଳିଲାଣିକି? ଆମେ ଅନ୍ଧବିଶ୍ୱାସ, କୁସଂସ୍କାର କବଳରୁ ନିଜକୁ ଓ ଦେଶକୁ ମୁକ୍ତ କରି ପାରିଲେଣି କି? ଆମ ଚାରି ପାଖରେ ଏମିତି ଅନେକ, ଅନେକ ପରାଧୀନତାର ଶୃଙ୍ଖଳ। ଏ ପରାଧୀନତା ବିରୋଧରେ ଆମକୁ ସଂଗ୍ରାମ କରିବାକୁ ପଡ଼ିବ। ଜୋର ଦାର୍ ବିପ୍ଲବ କରିବାକୁ ହେବ।

ଆଜି ଆପଣଙ୍କ ସମ୍ମୁଖରେ ଯେଉଁ ମହୀୟସୀ ମହିଳା ମୁକ୍ତାଦେବୀ ବସିଛନ୍ତି ତାଙ୍କ ଦୂରଦୃଷ୍ଟିକୁ ମୁଁ ଆଜି ତାରିଫ୍ ନକରି ରହି ପାରୁ ନାହିଁ। ଆଜିଠୁ ଅନେକ ବର୍ଷ ତଳୁ ସେ ନାରୀ ସ୍ୱାଧୀନତା ପାଇଁ ସଂଗ୍ରାମ କରି କାରାବରଣ କରିଥିଲେ। ତାଙ୍କର ସେଇ ସଂଗ୍ରାମ ପାଇଁ ସେ ବୈବାହିକ ଜୀବନର ସୁଖ, ଗର୍ଭର ସନ୍ତାନ, ଏପରିକି ଭିଟାମାଟିକୁ ହରାଇ ଏକନିଷ୍ଠ ଭାବେ ନାରୀ ନିର୍ଯ୍ୟାତନା ବିରୋଧରେ ସଂଗ୍ରାମ ଅବ୍ୟାହତ ରଖିଛନ୍ତି। ତାଙ୍କ ପରି ଜଣେ ନିସ୍ୱାର୍ଥପର, ତ୍ୟାଗୀ ମହିଳାଙ୍କୁ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ପ୍ରଦାନ କରିବାର ଗୌରବ ଲାଭ କରିଥିବାରୁ ଆମ ସରକାର ନିଜକୁ ଗୌରବାନ୍ୱିତ ମନେକରୁଛି।

ସଭା ମଧ୍ୟରୁ ଅନେକ କଣ୍ଠରୁ ଶୁଭିଲା—ସ୍ୱାଧୀନତା ସଂଗ୍ରାମୀ ମୁକ୍ତାଦେବୀ, ଜିନ୍ଦାବ.ଦ। ମୁକ୍ତାଦେବୀ ଆମର ନେତ୍ରୀ। ମୁକ୍ତାଦେବୀ ଅମର ରହେ।

ସଭା ମଞ୍ଚ ଉପରକୁ ଅନେକ ଯୁବକ, ଯୁବତୀ ଉଠି ଆସି ମୁକ୍ତାଦେବୀଙ୍କ ଚାରିପାଖରେ ବେଢି ଯାଇ ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜଣାଇ ତାଙ୍କ ଚାରିପାଖରେ ଜୟ, ଜୟ ଧ୍ୱନି କରୁଥିଲେ। ମୁକ୍ତାଦେବୀ କିଛି ନ ବୁଝି ପାରୁଥିବା ମୁଦ୍ରାରେ ସମସ୍ତଙ୍କୁ ଚାହିଁ ରହିଥିଲେ।

ମୁକ୍ତାଦେବୀ କିଛି ବୁଝି ନପାରୁଥିବା ମୁଦ୍ରାରେ ସମସ୍ତଙ୍କୁ ଚାହିଁ ରହିଥିଲେ।



# ସ୍ୱୟମ୍ବର

: ଏତେ ସୁନ୍ଦର ଝିଅଟିଏ ମୁଁ ଆଜିଯାଏ ଦେଖି ନାହିଁ ଶ୍ୟାମଳେନ୍ଦୁ! ରଙ୍ଗ, ଗଠନ, ଷ୍ଟାଇଲ ସବୁଥିରେ ଅନନ୍ୟା ଏ ସ୍ମିତା। କିନ୍ତୁ ବୟସ ଟିକେ ଅଧିକ ମନେହେଉଛି। ଏଇ ପଚିଶ/ଛବିଶ ପାଖାପାଖି ହୁଏତ ହେବ। ଏତେ ସୁନ୍ଦର ଆଉ ଉଚ୍ଚ ଶିକ୍ଷିତା ହୋଇ ମଧ୍ୟ ଆଜିଯାଏ ସେ କାହିଁକି କୁଆଁରୀ ଜୀବନ ବିତାଉଛନ୍ତି, ମୋ ମନରେ ସନ୍ଦେହ ହେଉଛି।

: ତୁ ବେଶୀ ଗୋଟେ ଛଇ କାଢ଼ନା ବିଜୟ। ସଫା ସଫା କହ ଝିଅଟିର ବୟସ ଅଧିକ ହୋଇଥିବାରୁ ତୁ ତାକୁ ପସନ୍ଦ କରୁ ନାହୁଁ।

: ନା, ଶ୍ୟାମଳେନ୍ଦୁ! ସେ କଥା ମୋଟେ ସତ ନୁହଁ। ମୁଁ ସ୍ମିତାଙ୍କୁ ପସନ୍ଦ କରିଛି। ସତ କହିବାକୁ ଗଲେ ପ୍ରଥମ ଦେଖାରୁ ମୁଁ ତାଙ୍କୁ ହଠାତ ଭଲ ପାଇ ବସିଛି। କିନ୍ତୁ ମୋର ସନ୍ଦେହ ହେଉଛି, ଏ ଝିଅ ପଛରେ କିଛିନା କିଛି ଇତିହାସ ଅଛି। ବିଶେଷ କରି ତାଙ୍କ ପରିବାରର ସମସ୍ତେ ସ୍ମିତାଙ୍କର ବିବାହ ଦେବାକୁ ଯେତେ ବ୍ୟସ୍ତତା, ବ୍ୟାକୁଳତା ପ୍ରକାଶ କରୁଛନ୍ତି ସେଇଥିରୁ ମୋର ସନ୍ଦେହ ବେଶି ବଢ଼ି ଯାଇଛି।

: ଝିଅଙ୍କ ପଛରେ ଇତିହାସ ରହିବା କ'ଣ ନୂଆ କଥା ? ପୃଥିବୀରେ ଆଜିଯାଏ ଯେତେ ଉପନ୍ୟାସ ଲେଖାଯାଇଛି ସବୁ ପ୍ରାୟ କୌଣସିନା କୌଣସି ଝିଅର ଇତିହାସକୁ କେନ୍ଦ୍ରକରି। ଯେତେ ଉପନ୍ୟାସ ଲେଖା ଯାଇଛି ତାଠୁ ଢେର ଅଧିକ ସଂଖ୍ୟାର ଉପନ୍ୟାସ ଲେଖାଯିବା ପାଇଁ ବାକି ଅଛି। ଯେଉଁ ଝିଅ ପଛରେ ଯେତେ ଇତିହାସ ଅଛି ସେ ଝିଅକୁ ବିବାହ କରିବାରେ ସେତେ ଗୌରବ।

: ମୁଁ ଭାବୁଛି କୌଣସି ଝିଅର ଇତିହାସ ନଜାଣି ତାକୁ ବିବାହ କରିବା ଠିକ୍ ହେବ ନାହିଁ। ଏ ବିଭାଘର ପ୍ରସ୍ତାବରେ ମୋର ସମ୍ମତି ଜଣାଇବା ପୂର୍ବରୁ ହୁଏତ ସେ ଝିଅଟିର ଇତିହାସ ସଂଗ୍ରହ କରିନେବା ଉଚିତ ହେବ।

ଆନନ୍ଦ ଚନ୍ଦ୍ର ପହି

ସ୍ମିତାଙ୍କର ଇତିହାସ ତାଙ୍କୁ କିଏ ଦେବ? ଝିଅଙ୍କ ଇତିହାସ ଜାଣିବା ସେତେ ସହଜ ନୁହେଁ। ତାଛଡ଼ା ବାରିପଦା ସହରର ଖବର ସେ କଟକ ସହରରେ ବସି ଜାଣିବେ ବା କେମିତି? କାହାରି ଜରିଆରେ ଏମିତି ଏକ ଗୁରୁତ୍ୱପୂର୍ଣ୍ଣ ଖବର ବୁଝିବା ଠିକ୍ ହେବ ନାହିଁ।

ବାରିପଦା ସହରରୁ ସ୍ମିତାଙ୍କର ଇତିହାସ ସଂଗ୍ରହ ପାଇଁ ଦୁଇବନ୍ଧୁ ବାରିପଦାରେ ଓହ୍ଲାଇଲେ। ତାଙ୍କ ଘରପାଖ ପାନ ଦୋକାନ, ଜଳଖିଆ ଦୋକାନ, ପାଖ ପଡ଼ୋଶୀ ସମସ୍ତେ ମନା କଲେ—ନା, ଆମେ କେହି ସ୍ମିତା ସଂପର୍କରେ କିଛି ଜାଣିନାହୁଁ। ତାଙ୍କ ଭାଇ ସମରବାବୁ ଏଇ ମାସେ ଦୁଇ ମାସ ହେବ ଏ ସହରକୁ ବଦଳି ହୋଇ ଆସିଛନ୍ତି।

ସ୍ମିତା ଘରକୁ ଯାଇ ତାଙ୍କୁ ଏ ବିଷୟରେ ସିଧା ପଚାରିବା ସମ୍ଭବ ନୁହେଁ। ଦୁଇ ବନ୍ଧୁ ଆଉ କିଛି ଉପାୟ ନପାଇ କଟକ ଲେଉଟିଲେ। ଫେରିବା ବାଟରେ ବିଜୟ ଭାବୁଥିଲେ, ହୁଏତ ସ୍ମିତା କୌଣସି ଦୁରାରୋଗ୍ୟ ରୋଗରେ ପିଡ଼ିତ। କିନ୍ତୁ ଏତେ ସୁନ୍ଦର ଶରୀର ଯେ ରୋଗଗ୍ରସ୍ତ ଏକଥା ମୋଟେ ମନକୁ ଆସୁନାହିଁ। ତାହେଲେ ଏତେ ବେଶି ବୟସ ପର୍ଯ୍ୟନ୍ତ ଏତେ ସୁନ୍ଦର ଝିଅ ଅବିବାହିତା ରହିବାରେ ଆଉ କ'ଣ କାରଣ ଥାଇପାରେ? ହୋଇପାରେ ଅନ୍ୟ କୌଣସି ଯୁବକକୁ ସ୍ମିତା ଅପେକ୍ଷା କରି କରି ଏତେଦିନ ବିତାଇ ଦେଇଛନ୍ତି। ହଠାତ୍ ତାଙ୍କର ମନେପଡ଼ିଲା, ଗତ ବର୍ଷ କୌଣସି ପୂଜାସଂଖ୍ୟା ପତ୍ରିକାରେ ସେ ଗୋଟିଏ କ୍ଷୁଦ୍ରଗଳ୍ପ ପଢ଼ିଥିଲେ। ଯୁବକଟି ଗବେଷଣା କରିବା ପାଇଁ ଆମେରିକା ଯାଇଛି। ଝିଅଟି ତାକୁ ଅପେକ୍ଷା କରିଛି। କିନ୍ତୁ ଯୁବକଟି ଆଉ ଫେରିନାହିଁ, ଆମେରିକାରେ ବିବାହ କରି ରହି ଯାଇଛି। ଝିଅଟି ଅନ୍ୟ କାହାକୁ ବିବାହ ନ କରି ତା ଜୀବନରେ ପ୍ରଥମ ପୁରୁଷ ସେଇ ଯୁବକର ପ୍ରେମର ସ୍ମୃତିକୁ ପାଥେୟ କରି ସାରା ଜୀବନ ଅବିବାହିତା ରହିଛି।

ସ୍ମିତା ପଛରେ ସେମିତି କିଛି ଇତିହାସ ଯଦି ଥାଏ, ସେ କଥାଟା ବିବାହ ପୂର୍ବରୁ ବୁଝିବା ନିହାତି ଦର୍କାର। କିନ୍ତୁ ଏମିତି ଏକ ଡେଲିକେଟ୍ କଥା କାହାକୁ ପଚାରି ବୁଝିବେ?

ବିଜୟ କଟକ ଫେରି ପାଇଲେ ଗୋଟିଏ ଚିଠି। ସେ ଚିଠିଟି ଥିଲା ସ୍ମିତାଙ୍କ ସଂପର୍କରେ। କିନ୍ତୁ ଚିଠି ତଳେ କାହାରି ନାଆଁ କି ଠିକଣା ନ ଥିଲା। ଏତେ ଦିନ ଧରି ସେ ଯେଉଁ କଥା ଜାଣିବାକୁ ଇଚ୍ଛା କରୁଥିଲେ ସେ କଥା ଜଣାଇ କେହି ଜଣେ ତାଙ୍କ ପାଖକୁ ଚିଠି ଲେଖିଛି।

ବିଜୟ ଚିଠିଟି ପଢ଼ି ସ୍ତବ୍ଧ ହୋଇ ଯାଇଥିଲେ। ତାଙ୍କ ମନ ଭିତରେ ବଡ଼ ଧରଣର ଓଲଟ ପାଲଟ। ଶ୍ୟାମଳେନ୍ଦୁ ହଠାତ୍ ଘର ଭିତରକୁ ପଶି ଆସି ବିଜୟଙ୍କୁ

ଏମିତି ଅବସ୍ଥାରେ ଦେଖି ଆଶ୍ଚର୍ଯ୍ୟ ହେଲେ। ତାଙ୍କ ହାତରୁ ଚିଠି ଆଣି ପଢିଲେ—ସ୍ମିତା ଧର୍ଷିତା। ଆଜିକୁ ପାଞ୍ଚବର୍ଷ ତଳେ ଭୁବନେଶ୍ୱର ସହରରେ ତାଙ୍କ ଭାଇଙ୍କ ସରକାରୀ କ୍ୱାର୍ଟର୍ସରେ ତାଙ୍କୁ ଧର୍ଷଣ କରା ଯାଇଥିଲା। ଖରାବେଳ। ଭାଇ, ଭାଉଜ ସୁନା ଗହଣା କିଣିବାକୁ କଟକ ଯାଇଥିଲେ। କେହି ଜଣେ କଲିଂବେଲ୍ ମାରିଲା। ସ୍ମିତା କବାଟ ଖୋଲିଲେ। କେହି ଜଣେ ଘରେ ପଶି ସ୍ମିତାଙ୍କୁ ଧର୍ଷଣ କଲା। ଦ୍ୱିପହରଟା ନିଛାଟିଆ। କଲୋନୀରେ ପୁରୁଷଲୋକ କେହି ନଥିଲେ। ସ୍ତ୍ରୀଲୋକମାନେ ଖାଇପିଇ ନିଦ ଯାଇଥିଲେ। ସ୍ମିତା ସେ ଧର୍ଷଣକାରୀ ସହିତ ଅନେକ ଲଢ଼ିଲା। କିନ୍ତୁ ଲଢ଼ି ଲଢ଼ି ପରାସ୍ତ ହେଲା। ପାଟି ଶୁଣି କଲୋନୀର ସ୍ତ୍ରୀଲୋକମାନେ ଆସିବା ଆଗରୁ ଧର୍ଷଣକାରୀ ସ୍ମିତାଙ୍କୁ ଛାଡ଼ି ଚାଲିଯାଇଥିଲା।

ଶ୍ୟାମଳେନ୍ଦୁ ଚିଠିଟି ପଢିସାରି ବିଜୟଙ୍କ ମୁହଁକୁ ଚାହିଁଲେ। ବିଜୟ ଠିଆ ଠିଆ ଷାଟ୍ୟୁ ପାଲଟି ଯାଇଥିଲେ। ଦୁଇ ବନ୍ଧୁଙ୍କ ମୁହଁରେ କଥା ନଥିଲା। କିନ୍ତୁ ଅନେକ ବ୍ୟଥାରେ ଦୁହେଁ ଦୁଇଟି ଥୁଣ୍ଟା ଗଛ ପରି ଚୁପ୍ ଚାପ୍ ଠିଆ ହୋଇଯାଇଥିଲେ। ଏମିତି ଅନେକ ସମୟର ନୀରବତା ପରେ ବିଜୟ ରୁମାଲ କାଢ଼ି ଆଖି ଓ ମୁହଁ ପୋଛିଲେ। ଭଙ୍ଗା ଭଙ୍ଗା କଣ୍ଠରେ କହିଲେ-ମୁଁ ଭାବୁଛି ଆଜି ଆମେ ବାରିପଦା ଗଲେ ଭଲ ହେବ। କଥାଟା.....

: ତୋ ମୁଣ୍ଡ କ'ଣ ଖରାପ ହେଲାଣିନା କ'ଣ? କିରେ ଆଜି ତ ବାରିପଦାରୁ ଆସିଲେ, ପୁଣି କାହିଁକି ଯିବା? ତାଙ୍କୁ ମନା କରିବା ପାଇଁ ସ୍ୱଦେହରେ ସେଠିକି ଯିବା କ'ଣ ଦରକାର? ଗୋଟେ ଟେଲିଗ୍ରାମ କରି ଦେବା।

ବିଜୟ ମୁଣ୍ଡ ହଲାଇ ମନା କଲେ—ନା, ଶ୍ୟାମଳେନ୍ଦୁ ମୁଁ ସେକଥା କହୁନାହିଁ। ଆମେ ଯାଇଁ ତାଙ୍କୁ ଏ ଚିଠିର ସତ୍ୟତା ସଂପର୍କରେ ପଚାରିବା।

: ତୋ ପରି ବୋକା କେହି ନାହିଁ। ସେମାନେ କ'ଣ ମାନିବେ, ଏଇଟା ସତ କଥା। ଆମ ଝିଅ ଧର୍ଷିତା- ଏମିତି କଥା କେହି କ'ଣ ସ୍ୱୀକାର କରେ?

: ତଥାପି ମୁଁ ଏକଥା ସ୍ମିତାଙ୍କୁ ପଚାରିବାକୁ ଚାହେ।

: ଏମିତି କଥା ତୁ କେମିତି ତାଙ୍କୁ ପଚାରିବୁ?

: ମୋର ସନ୍ଦେହ ହେଉଛି ଶ୍ୟାମଳେନ୍ଦୁ! ଏ ଘଟଣା ସତ୍ୟ ନୁହେଁ। କେହି ଜଣେ ଏମିତି ମିଛ ଚିଠି ଲେଖି ସ୍ମିତାଙ୍କ ସମସ୍ତ ବିବାହ ପ୍ରସ୍ତାବ ଭାଙ୍ଗୁଛି। ମୁଁ ଚାହେ ଏହା ପଛରେ ଥିବା ଗୁପ୍ତ ହାତକୁ ଆଲୋକକୁ ଆଣିବାକୁ।

ଶ୍ୟାମଳେନ୍ଦୁ କହିଲେ—ହଁ, ତା ବି ହୋଇପାରେ। ଆମ ଗାଆଁରେ ସେମିତି ଗୋଟେ ଘଟଣା ଘଟିଥିଲା। ଆମ ଗାଆଁର ମିନତି ନାଆଁରେ ବିଭିନ୍ନ ଖରାପ

କଥା ଲେଖି ତାର ବିଭାଘର ଭାଙ୍ଗୁଥିବା ଲୋକଟି ଥିଲା ଜଣେ ବେକାର ଯୁବକ। ତାର ବିବାହ ପ୍ରସ୍ତାବକୁ ମିନତିର ବାପା ନାପସନ୍ଦ କଲାପରଠୁ ସିଏ ଏମିତି ନାନା ଅସୁନ୍ଦର ଚିଠିମାନ ପଠାଇ ମିନତିର ବିଭାଘର ଭାଙ୍ଗିବାରେ ସଫଳ ହେଲା। ଶେଷରେ ମିନତି ବିବାହ କରି ନପାରି ଆତ୍ମହତ୍ୟା କଲା।

ଦୁଇବନ୍ଧୁ ପୁଣିଥରେ ବାରିପଦା ଗଲେ। ହଠାତ୍ ଏ ଦୁଇବନ୍ଧୁଙ୍କୁ ଦେଖି ସ୍ମିତାଙ୍କର ଭାଇ ସମରବାବୁ ଆଶ୍ଚର୍ଯ୍ୟ ହେଲେ। ସ୍ମିତାଙ୍କ ସହିତ ଆଉ ଥରେ ସାକ୍ଷାତ ଆଲୋଚନା ପାଇଁ ବିଜୟ ପ୍ରସ୍ତାବ ଦେଲେ। ପ୍ରଥମେ ଟିକେ ଅନିଚ୍ଛା ପ୍ରକାଶ କରିଥିଲେ ବି ପରେ ରାଜିହେଲେ ସମରବାବୁ।

ବିଜୟ ଚିଠିଟିକୁ ସ୍ମିତାଙ୍କୁ ବଢ଼ାଇ ଦେଇ କହିଲେ—ଚିଠିଟି ଆପଣ ପଢ଼ନ୍ତୁ। ମୋର କିନ୍ତୁ ମନେ ହୁଏ ଏ ଘଟଣା ସତ୍ୟ ନୁହେଁ। କେହି ଆପଣଙ୍କ ନାଆଁରେ ଏ ମିଥ୍ୟା ପ୍ରଚାର କରି ଆପଣଙ୍କ ସମସ୍ତ ବିଭାଘର ପ୍ରସ୍ତାବ ଭାଙ୍ଗୁଛି। ଏଥିପୂର୍ବରୁ ଆପଣଙ୍କର ଯେତେ ବିବାହ ପ୍ରସ୍ତାବ ଆସିଥିବ ସବୁ ଏମିତି ଏକ ଚିଠି ଦ୍ୱାରା ସେ ପ୍ରସ୍ତାବ ଭାଙ୍ଗିଥିବ।

ସ୍ମିତା ଚିଠିଟି ଉପରେ ଆଖି ବୁଲାଇ ଆଣି ନୀରବ ରହିଲେ। ତାଙ୍କ ମୁହଁ ଉପରେ ରକ୍ତ ଜମାଟ ବାନ୍ଧି ଯାଇଥିଲା। ସେ ଉତ୍ତେଜିତା ଦିଶୁଥିଲେ।

ବିଜୟ ପୁଣି ପ୍ରଶ୍ନ କଲେ—ଆପଣଙ୍କର ସମସ୍ତ ବିବାହ ପ୍ରସ୍ତାବ ଏମିତି ଗୋଟିଏ ଗୋଟିଏ ଚିଠି ଦ୍ୱାରା ଭାଙ୍ଗିଥିଲା କି ?

ସ୍ମିତା ମୁଣ୍ଡ ହଲାଇ ସମ୍ମତି ଜଣାଇଲେ। ବିଜୟ ପୁଣି ପଚାରିଲେ—ଏମିତି ମିଛ ଚିଠି କିଏ ଲେଖୁଛି ?

ସ୍ମିତା ଦୃଢ କଣ୍ଠରେ ବିରୋଧ କଲେ। ଏ ଚିଠିର ଘଟଣା ମିଛ ନୁହେଁ, ସତ। ଏ ଘଟଣା ସତ ହେଲେ ବି ଆମ ଘର ଲୋକମାନେ ମୋ ବିଭାଘର ପ୍ରସ୍ତାବ ଭାଙ୍ଗିଯିବା ଭୟରେ କୌଣସି ବିବାହ ପ୍ରସ୍ତାବ ବେଳେ ଏହା ନକହି ଗୋପନ ରଖନ୍ତି।

ବିଜୟ ଏମିତି ଏକ ଉତ୍ତର ଆଶା କରି ନଥିଲେ। ଏ ଉତ୍ତର ତାଙ୍କ ପ୍ରତ୍ୟୟକୁ ଅନେକ ବଡ଼ ଧକ୍କା ପହଞ୍ଚାଇଥିଲା। ତଥାପି ନିଜକୁ ସମ୍ଭାଳି ନେଇ ପଚାରିଥିଲେ—ତାହେଲେ ଏମିତି ଚିଠି କିଏ ଲେଖୁଛି ?

ସ୍ମିତା ଏ ପ୍ରଶ୍ନର କିଛି ଉତ୍ତର ନଦେଇ ମୁହଁ ତଳକୁ କରି ଦେଲେ। ବିଜୟ ପୁଣିଥରେ ପଚାରିଲେ—ଆପଣଙ୍କୁ ଅନ୍ୟକେହି ବ୍ଲାକମେଲ କରିବାକୁ ଏପରି ଚିଠି ଲେଖୁଛି କି ?

ସ୍ମିତା ପୁଣି ମୁଣ୍ଡ ହଲାଇ ମନା କଲେ। ବିଜୟ ଖୁବ୍ ନମ୍ର ଭାବରେ କହିଲେ—ମୋର କିନ୍ତୁ ମନେ ହୁଏ ଯିଏ ଏ ଚିଠି ଲେଖୁଛି ତାର କିଛି ସ୍ୱାର୍ଥ ଅଛି। ଆପଣ କାହାକୁ ସନ୍ଦେହ କରୁଛନ୍ତି ?

ସ୍ମିତା ଏଥର ସେମିତି ତଳକୁ ମୁହଁ କରି ଯାହା ଉତ୍ତର ଦେଲେ ସେଥିରେ ବିଜୟ, ଶ୍ୟାମଳେନ୍ଦୁ ଓ ସ୍ମିତାଙ୍କ ଭାଇ ଭାଉଜ ସମସ୍ତେ ଆଶ୍ଚର୍ଯ୍ୟ ହେଲେ।

ସ୍ମିତାଙ୍କର ଉତ୍ତର ଥିଲା—ସେ ଚିଠିର ଲେଖକ ସିଏ ନିଜେ। ସ୍ମିତା ନିଜେ ବିଜୟଙ୍କ ପାଖକୁ ସେ ଚିଠି ଲେଖିଥିଲେ। ଏମିତି ଯେତେ ବିଭାଘର ଆଗରୁ ପଡ଼ିଥିଲା ସବୁ ପ୍ରସ୍ତାବକୁ ଏମିତି ଚିଠିଲେଖି ସ୍ମିତା ନିଜେ ଭାଙ୍ଗିଛନ୍ତି।

ଏ ଚିଠି ସେ କାହିଁକି ଲେଖନ୍ତି ? ଏଥିରେ ତାଙ୍କର କି ଲାଭ ହୁଏ ? ଆଜୀବନ ବିବାହ ନ କରିବା ତାଙ୍କର ଇଚ୍ଛା କି ? ଏମିତି ଅନେକ ପ୍ରଶ୍ନ କରିଥିଲେ ବିଜୟ ଓ ତାଙ୍କ ଭାଇ ସମର।

ସ୍ମିତା କାନ୍ଦ କାନ୍ଦ ହୋଇ କହିଲେ—ମୁଁ ଜାଣେ ଏ ଘଟଣା ଦିନେ ନା ଦିନେ ମୋ ବିବାହିତ ସଂସାରରେ ଝଡ଼ ସୃଷ୍ଟି କରିବ। ତେଣୁ ବିବାହ ପୂର୍ବରୁ ଏକଥାଟା ପରିଷ୍କାର କରିଦେବା ପାଇଁ ମୁଁ ଚିଠି ଲେଖୁଛି। ଏ ଘଟଣା ଜାଣିବା ପରେ କେହି ମୋତେ ଗ୍ରହଣ କରିବାକୁ ଯଦି ଆଗେଇ ଆସନ୍ତି ତାହେଲେ ମୁଁ ବିବାହ କରିବି। ନଚେତ ଆଜୀଜବନ କୁମାରୀ ରହିବି।

ଶ୍ୟାମଳେନ୍ଦୁ ଏଥର ସ୍ମିତାଙ୍କୁ ପ୍ରଶ୍ନ କଲେ—ଆପଣ କଣ ଆଶା କରୁଛନ୍ତି କୌଣସି ଯୁବକ ଏସବୁ ଘଟଣା ଜାଣିବା ପରେ ମଧ ଆପଣଙ୍କୁ ଗ୍ରହଣ କରିବାକୁ ଆଗେଇ ଆସିବ ?

ସ୍ମିତା ତଳକୁ ମୁହଁ କରି ବସି ରହିଲେ। ସମର ବାବୁ ଓ ତାଙ୍କ ଭାଉଜଙ୍କ ମୁହଁ ବିବର୍ଣ୍ଣ ଦିଶୁଥିଲା। ସାରା ପରିବେଶରେ ଥମ୍ ଥମ୍ ଭାବ।

ସମସ୍ତଙ୍କୁ ଆଉ ଥରେ ଆଶ୍ଚର୍ଯ୍ୟ କରି ବିଜୟ କହିଲେ— ଏ ସବୁ ଜାଣିବା ପରେ ମଧ ମୁଁ ସ୍ମିତାଙ୍କୁ ଗ୍ରହଣ କରିବାକୁ ସମ୍ମତ। ମୋ ଦୃଷ୍ଟିରେ ସ୍ମିତା ଜଣେ ଲଢୁଆ ଯୋଦ୍ଧା। ଶତ୍ରୁର ବଶତା ସ୍ୱୀକାର ନ କରି ସିଏ ତା ସହିତ ସାଧ୍ୟମତେ ଲଢ଼ିଛନ୍ତି। ତାଙ୍କ ସ୍ଥାନରେ ଯେ କୌଣସି ଝିଅ ଥିଲେ ବି ତାଠୁ ଅଧିକ କିଛି କରିପାରି ନଥାନ୍ତା। ସିଏ ତା ସହିତ ଲଢ଼ିଲେ ବୋଲି ତାଙ୍କୁ ଏ ଦଶା ଭୋଗିବାକୁ ପଡିଲା। ସିଏ ଯଦି ସେଦିନ ବିନା ପ୍ରତିବାଦରେ ତାକୁ ଗ୍ରହଣ କରିଯାଇ ଥାଆନ୍ତେ ସେ କଥା କାହା କାନକୁ ଆସିନଥାନ୍ତା। ତାପରେ ଅନ୍ୟ ଜଣଙ୍କୁ ବିବାହ କରି ତାର ଧର୍ମପତ୍ନୀ ସାଜିଥାନ୍ତେ।

ଆନନ୍ଦ ଚନ୍ଦ୍ର ପତି

ଆମ ସମାଜ ଆଜି ଏମିତି ଲଢୁଆ ଶହୀଦମାନଙ୍କୁ ଗ୍ରହଣ କରୁ ନଥିବାରୁ ଆଜି ଅନେକ ଝିଅ ବଦନାମ ହେବା ଭୟରେ କେତେକ ସ୍ଥାନରେ ଦେହ ଦାନକରି ଧର୍ଷଣ ମୁଖରୁ ନିଜକୁ ବଞ୍ଚାଇ ଆଣୁଛନ୍ତି। ଘର ସଂସାର କରୁଛନ୍ତି। ସୁଖରେ ସମୟ ବିତାଉଛନ୍ତି। ଯିଏ ଚାଉଳ ତଳେ କୁଣ୍ଡାକୁ ପୋତି ନ ପାରି ଅଧସେର ଚାଉଳ ଘରକୁ ଆଣୁଛି ସିଏ ନିରୀହ କପୋତ ପିଲା ପରି ମରୁଛି।

ଧର୍ଷିତା ଝିଅଟି ଦୁଃଶ୍ଚରିତ୍ରା ନୁହଁ। ଚରିତ୍ରର ନିର୍ମଳତା ଓ ପବିତ୍ରତା ରକ୍ଷା କରିବା ପାଇଁ ସେ ଧର୍ଷିତା। ଏକଥା ଜାଣି ମଧ ସମାଜ ତା ମଥାରେ କଳଙ୍କର ଟିକା ଲଗାଇ ଦିଏ; କିନ୍ତୁ ଅନେକ ଅଜଣା କଳଙ୍କିନୀଙ୍କ ମଥାରେ ସତୀତ୍ୱର ସିନ୍ଦୂର ଟିପା ଲଗାଇ ସେମାନଙ୍କୁ ଗୃହଲକ୍ଷ୍ମୀର ସମ୍ମାନ ଦିଏ।

ଧର୍ଷିତା ଝିଅଟି ଯଦି ସତୀତ୍ୱ ପାଇଁ ଯୁଦ୍ଧ କରି ଦୁଃଶ୍ଚରିତ୍ରା ଆଖ୍ୟା ପାଏ, ତାକୁ ଯଦି ବିବାହ କରିବାକୁ କେହି ସୁପୁରୁଷ ଆଗେଇ ନଆସେ, ତାହେଲେ ଧର୍ଷଣକାରୀ ସହିତ ସଂଗ୍ରାମ ନକରି ସେ ସାଲିସ୍ କରିବ।

ଏମିତି ଏକ କ୍ଷତାକ୍ତ ଯୋଦ୍ଧା ଗଳାରେ ଜୟମାଲ୍ୟ ପିନ୍ଧାଇ ମୁଁ ଧର୍ମପତ୍ନୀର ସମ୍ମାନ ଦେଲେ ନିଜେ ସମ୍ମାନିତ ହେବି, ଗୌରବାନ୍ୱିତ ହେବି। ଏଥିପାଇଁ ସ୍ମିତାଙ୍କର ସ୍ୱୀକୃତି ଓ ଆପଣମାନଙ୍କର ଆଶୀର୍ବାଦ ମୋର ଲୋଡ଼ା।

ଆନନ୍ଦ ଓ ଲଜ୍ଜାର ମିଶା ମିଶି ଏକ ରଙ୍ଗରେ ସ୍ମିତାଙ୍କ ମୁହଁଟା ଅନନ୍ୟ ସୁନ୍ଦର ଦିଶୁଥିଲା। ତାଙ୍କ ଭାଉଜ ତାଙ୍କୁ ନିଜ ଆଡ଼କୁ ଆଉଜାଇ ଆଣି ତାଙ୍କ ପିଠି ଆପୁଡାଉ ଥିଲେ। ସମରବାବୁ କୃତଜ୍ଞତାରେ ବତୁରିଯାଇ ବିଜୟଙ୍କୁ କୁଣ୍ଢେଇ ପକାଇଥିଲେ।

ଶ୍ୟାମଳେନ୍ଦୁ ଅବାକ ହୋଇ ଏ ଦୃଶ୍ୟ ଦେଖୁଥିଲେ। ତାଙ୍କୁ ଲାଗୁଥିଲା ଯେପରି ଅନ୍ୟ ଏକ ଅନାବିଷ୍କୃତ ଦିଗନ୍ତ ତାଙ୍କ ଆଗରେ ପ୍ରସରିଯାଉଛି ଅବନୀରୁ ଆକାଶ ପର୍ଯ୍ୟନ୍ତ।



# ଅବ୍ୟବସ୍ଥା

ସରକାରୀ ବସ୍‌ଟା ପ୍ରାଇଭେଟ୍ ବସ୍‌ପରି ଖୁନ୍ଦାଖୁନ୍ଦି ଠେସାଠେସି ନୁହଁ କି ପ୍ରତି ଷ୍ଟପେଜ୍‌ରେ ଅସ୍ୱାଭାବିକ ଭାବେ ବିଳମ୍ବ କରେନା ବୋଲି ସରୋଜବାବୁଙ୍କର ଧାରଣା। ତେଣୁ ପ୍ରାଇଭେଟ୍ ବସ୍ ଛାଡ଼ି ସିଏ ସରକାରୀ ବସ୍‌କୁ ଉଠିଲେ। ଝରକା ପାଖରେ ଭଲ ସିଟ୍‌ଟିଏ ମଧ୍ୟ ତାଙ୍କୁ ମିଳିଗଲା। ଘଣ୍ଟାକୁ ଚାହିଁଲେ ଠିକ୍ ପାଞ୍ଚଟା ବାଜିଛି। ଭୁବନେଶ୍ୱରରୁ କଟକ ପଇଁଚାଳିଶ ମିନିଟ୍‌ରୁ ଘଣ୍ଟାଏ ଭିତରେ ଲାଗିବ।

କଣ୍ଡକ୍ଟର ଟିକେଟ କାଟି ଚାଲିଛି। ବସ୍‌ରେ ଥିବା ଯାତ୍ରୀମାନେ କହିଲେ—ବସ୍ ଛାଡ଼୍! ବାଟରେ ଟିକେଟ କାଟିବ। ବସ୍ ଠିଆ କରାଇ ସମୟ ନଷ୍ଟ କରୁଛ କାହିଁକି ?

କଣ୍ଡକ୍ଟର କିଛି ନ ଶୁଣି ଟିକେଟ୍ କାଟିଚାଲିଲା। ବସ୍‌ର ଅଧାଅଧି ଲୋକଙ୍କର ଟିକେଟ୍ ହୋଇ ସାରିବା ପରେ ଜଣେ ଯାତ୍ରୀ କହିଲା—ଏବେ ତ ଅଧା ଲୋକଙ୍କର ଟିକେଟ କଟା ସରିଲାଣି, ଗାଡ଼ି ଛାଡ଼। ବାଟରେ ବାକିତକ କାଟିବ।

କଣ୍ଡକ୍ଟର କିଛି ନ କହି କେବଳ ଡ୍ରାଇଭର ଆଡ଼କୁ ଟିକେ ଚାହିଁଲା। ପୁଣି ଟିକେଟ୍ କାଟିବାରେ ଲାଗିଗଲା। ଯାତ୍ରୀ ଭିତରୁ ଜଣେ ଡ୍ରାଇଭର ପାଖକୁ ଉଠିଯାଇ ତାକୁ କହିଲେ— କଣ୍ଡକ୍ଟର ତ ଟିକେଟ୍ କାଟୁଛି, ତମେ କାହିଁକି ବସିଛ ? ଗାଡ଼ି ଚଲା। ଏତେଗୁଡ଼େ ଲୋକଙ୍କର ଏତେ ସମୟକୁ ଏକାଠି ବାନ୍ଧି ହତ୍ୟା କରୁଛ କାହିଁକି ?

ଡ୍ରାଇଭର ସମସ୍ତଙ୍କୁ ଶୁଣେଇ ଶୁଣେଇ କହିଲେ—ଟିକେଟ କଟା ନ ସରିଲେ ମୁଁ ଗାଡ଼ି ଚଳାଏ ନାହିଁ। ଆଉ ଅଳ୍ପ ସମୟ ଅପେକ୍ଷା କରନ୍ତୁ, ଟିକେଟ୍ ସରିଆସିଲାଣି।

ଟିକେଟ୍ କଟା ସାରିବାକୁ କଣ୍ଡକ୍ଟର ନେଲା ଦଶ ମିନିଟ୍। ଚାରି ପାଞ୍ଚ ଜଣ ବିରକ୍ତ ହୋଇ ପ୍ରାଇଭେଟ୍ ବସ୍‌କୁ ଚାଲିଗଲେ। ବସ୍ ଏଥର ଛାଡ଼ିବ। ଡ୍ରାଇଭର

ଆନନ୍ଦ ଚନ୍ଦ୍ର ପହି

ହର୍ଣ୍ଣ ବଜାଉଥିଲେ। ହର୍ଣ୍ଣଟା ଏତେ ଜୋରରେ ଓ ଏତେ ସମୟ ବାଜିଲା ଯେ ଯାତ୍ରୀମାନଙ୍କ ମଧ୍ୟରୁ କେତେକ କାନରେ ହାତ ଦେବାକୁ ବାଧ୍ୟ ହେଲେ। ଆଉ କେତେକଙ୍କ ମୁହଁରେ ବିରକ୍ତିର ସ୍ପଷ୍ଟ ଚିତ୍ର ଆଙ୍କି ହୋଇଗଲା। ମନେହେଲା ସତେ ଯେମିତି କୌଣସି କାରଖାନାର ସାଇରନ୍ ବାଜୁଛି।

ଏ କ'ଣ? ବସ୍‌ଟା ଏତେ ମନ୍ଥର ଗତିରେ ଚାଲିଛି କାହିଁକି? ପୁଣି ଏତେ କମ୍ ସମୟ ବ୍ୟବଧାନରେ ବାରମ୍ବାର ସେଇ କର୍କଶ ହର୍ଣ୍ଣଟା ବାଜୁଛି କାହିଁକି? କେତେକ ଯାତ୍ରୀ ଝରକା ବାଟେ ମୁହଁ ଗଳାଇ ରାସ୍ତାକୁ ଚାହିଁଲେ। ରାସ୍ତା ପରିଷ୍କାର। କେବଳ କେତେଟା ସାଇକେଲ ଓ ସ୍କୁଟର ଚାଲିଛି।

ପ୍ରାୟ ପ୍ରତି ତିରିଶ, ଚାଳିଶ ସେକେଣ୍ଡରେ ପେଁ ପେଁ ଶବ୍ଦ। ରାସ୍ତାରେ ସ୍କୁଟର, ମଟର, ମଟରସାଇକେଲ ଦେଖିଲେ ବସ୍‌ର ହର୍ଣ୍ଣ ବାଜି ଉଠିଲା। ଗତି ଧୀର ହେଲା। ଗାଡ଼ିର ଗିଅର ବଦଳିଲା। ଆଗରେ ଛକଟିଏ ଦେଖିଲେ ବି ଗତି ଧୀର ହେଲା, ଗାଡ଼ିର ଗିଅର ବଦଳିଲା ଓ ହର୍ଣ୍ଣ ବାଜିଲା। ବସ୍ ଭିତରେ ଯାତ୍ରୀମାନେ ଅତିଷ୍ଠ ହୋଇଗଲେ।

କେବଳ ସରୋଜବାବୁ ନୁହନ୍ତି ବସ୍‌ରେ ବସିଥିବା ସମସ୍ତ ଯାତ୍ରୀ କଣ୍ଡକ୍ଟରକୁ ଆକ୍ରମଣ କଲେ—ଏମିତି ଅଦ୍ଭୁତ ବସ୍ ଆମେ କେବେ ଦେଖି ନାହୁଁ। ଏତେ ମନ୍ଥର ଗତିରେ ଯାଉଛି ପୁଣି ଏତେ ଘନ ଘନ ହର୍ଣ୍ଣ ବାଜୁଛି। ଏମିତି ଚାଲିଲେ କଟକରେ ପହଞ୍ଚିବାକୁ ଅଢେଇ ଘଣ୍ଟାରୁ କମ୍ ସମୟ ଲାଗିବ ନାହିଁ। ଆଉ ସେତେବେଳକୁ ହର୍ଣ୍ଣର ଘନ ଘନ ଆବାଜରେ ଆମର କାନ ପରଦା ଫାଟି ଲହୁ ଲୁହାଣ ହୋଇଯାଇଥିବ। ତମେ ବସ୍ ଅଟକାଅ, ଆମେ ଏଥିରୁ ଓହ୍ଲାଇ ଅନ୍ୟ ବସ୍‌ରେ ଯିବୁ।

କଣ୍ଡକ୍ଟର ହାତ ଯୋଡ଼ି ଅନୁନୟ କଲା—ଆପଣମାନେ ଦୟା କରି ଟିକେ ଧୈର୍ଯ୍ୟ ଧରନ୍ତୁ। ଭୁବନେଶ୍ୱର ସହରଟା ପାର ହୋଇଗଲେ ଏସବୁ ଅସୁବିଧା ରହିବ ନାହିଁ।

ବସ୍ ଭିତରେ କିଏ ଜଣେ ପାଟି କରି ଉଠିଲେ—ଆମକୁ ତମେ କ'ଣ ମଫସଲି ବୋଲି ଭାବିଛ କି? ଆମେ କ'ଣ ନୂଆ ହେଇ ଭୁବନେଶ୍ୱର କଟକ ବସ୍‌ରେ ବସୁଛୁ? ସହର ଭିତରେ କେଉଁ ବସ୍‌ଟା ଏମିତି କଚ୍ଛପ ଗତିରେ ଯାଉଛି? ଏତେ ଧୀରେ ଧୀରେ ଶଗଡ଼ ପରି ଢ଼ଳି ଢ଼ଳି ଏ ବସ୍ କାହିଁକି ଚାଲିଛି?

କଣ୍ଡକ୍ଟର କିଛି ଉତ୍ତର ନଦେଇ ଟିକେଟ୍ ଖାତାରୁ କ'ଣ ହିସାବ କରିବାରେ ମନ ଦେଲା। ଆଉ ଜଣେ କିଏ ପଛ ସିଟ୍‌ଆଡୁ କହିଲେ—ଡ୍ରାଇଭର୍ ବଦଳରେ କ୍ଲିନର ବସ୍ ଚଳାଉଛି କି? ଏତେ ଧୀରେ ଧୀରେ କଣ ବସ୍ ଚାଲେ? ହେଇ

ଦେଖ ଦେଖ ଲୁନାଟା ବସକୁ ଓଭର୍ ଟେକ୍, କରି ଚାଲିଗଲା।

ଆଉ ଜଣେ କିଏ କହିଲା— ହେଇ ଦେଖ ଲୁନା ପଛେ ପଛେ ଗୋଟେ ସାଇକେଲ ଆସୁଛି। ମୁଁ ସତ କହୁଛି ଯଦି ସାଇକେଲଟା ଏ ବସ୍‌କୁ ଓଭର୍ ଟେକ୍ କରି ଚାଲିଯାଏ ତାହେଲେ ମୁଁ ନିଶ୍ଚୟ ବସ୍‌ରୁ ଓହ୍ଲାଇ ଯିବି।

ସତକୁ ସତ ବସ୍ ଡ୍ରାଇଭର୍ ସାଇକେଲଟିକୁ ରାସ୍ତା ଛାଡ଼ି ପାଖେଇ ଗଲା। ଅତିକ୍ରମ କରିଯିବାକୁ ଇଙ୍ଗିତ ଦେଲା। ଏ ଦୃଶ୍ୟ ବସ୍‌ରେ ସବାର ହୋଇଥିବା ସମସ୍ତ ଯାତ୍ରୀଙ୍କୁ ଏକାବେଳକେ ହସାଇ ଦେଲା। ବସ୍‌ରୁ ଓହ୍ଲାଇ ଯିବାକୁ ବାଜି ମାରିଥିବା ଲୋକକୁ ଜଣେ କିଏ କହିଲା—ତମେ ତ ବାଜିରେ ହାରିଲ, ଏବେ ବସ୍‌ରୁ ଓହ୍ଲା। କଣ୍ଡକ୍ଟରବାବୁ! ଗାଡ଼ି ଅଟକାଅ, ଏ ବାବୁ ଏଇଠି ଓହ୍ଲାଇ ଯିବେ।

କଣ୍ଡକ୍ଟର ମୁହଁରେ କେବଳ ନିର୍ବୋଧ ହସ ଧାରେ ଖେଳିଯାଇ ଲିଭିଗଲା। ବସ୍ ସେଇ ବଳଦଗାଡ଼ି ଗତିରେ ଚାଲିଛି। ଜଣେ କିଏ ପଛରୁ ପାଟି କଲା—ହଅ, ହଅ.... ହଅ।

ଆଉ ଜଣେ କିଏ ମନ୍ତବ୍ୟ ଦେଲା—କଲିକତାରେ ଚଳନ୍ତା ଟ୍ରାମଗାଡ଼ିରୁ ଲୋକମାନେ ଓହ୍ଲାଇ ଯାଆନ୍ତି, ଚଢ଼ି ଆସନ୍ତି। ଏ ବସ୍ ଟ୍ରାମଠୁ ଆହୁରି ମନ୍ଥର ଗତିରେ ଚାଲିଛି। ହଅ କରିବା ଦରକାର ନାହିଁ। ଯଦି କହିବ ମୁଁ ନିଜେ ଓହ୍ଲାଇକି ଦେଖେଇଦେବି।

କଣ୍ଡକ୍ଟର ହାତ ଯୋଡ଼ି ଅନୁରୋଧ କଲା—ଆପଣମାନେ ଚଳନ୍ତା ବସ୍‌ରୁ ଓହ୍ଲାଇବା ପାଇଁ ଦୁଃସାହସ କରନ୍ତୁ ନାହିଁ। ହାତଗୋଡ଼ ଭାଙ୍ଗିଯିବ। ଯଦି କିଛି ଦରକାର ଅଛି କୁହନ୍ତୁ, ମୁଁ ହୁଇସିଲ ମାରି ଗାଡ଼ି ଅଟକାଇବି। ଭୁବନେଶ୍ୱର ସହର ପାର ହେବାକୁ ଆଉ ବେଶି ସମୟ ଲାଗିବ ନାହିଁ। ଭୁବନେଶ୍ୱର ପାର ହୋଇଗଲେ ବସ୍ ଠିକ୍ ଗତିରେ ଚାଲିବ।

ସରୋଜବାବୁ କହିଲେ—ତମ ପଛରୁ କେତେ ବସ୍ ଆସି ତମକୁ ଓଭରଟେକ୍ କରି ଗଲାଣି? ଏଟା ଡ୍ରାଇଭର ନା ଆଉ କ'ଣ? ସତ କହିଲ ଇଏ ଡ୍ରାଇଭିଙ୍ଗ୍ ଜାଣିଛି ନା ଡ୍ରାଇଭିଙ୍ଗ୍ ଶିଖୁଛି?

କଣ୍ଡକ୍ଟର ତାଙ୍କ ମୁହଁ ପୋଖରୀରେ ହସର ଭଉଁରୀ ଖେଳାଇ କହିଲେ—ଏଟା କ'ଣ ପ୍ରାଇଭେଟ୍ ବସ୍ ହେଇଚି ଯେ ହେଲ୍‌ପର୍ କି କ୍ଲିନର ଚଳାଇବ? ଇଏ ଜଣେ ପୋଖତ ଡ୍ରାଇଭର।

କଣ୍ଡକ୍ଟରଙ୍କ କଥାକୁ ତାଚ୍ଛଲ୍ୟ କରି ଆଉ ଜଣେ କହିଲେ—ପୋଖତ ହାତର କରାମତି ଜଣାପଡୁଛି। କିନ୍ତୁ ବସଟା ପୋଖତୀ ସ୍ତ୍ରୀଲୋକ ପରି ଏମିତି ଦୁର୍ବଳ ପାହୁଣ୍ଡ କାହିଁକି ପକାଉଛି?

ଆନନ୍ଦ ଚନ୍ଦ୍ର ପତି

ବସ୍‌ରୁ ଓହ୍ଲାଇଯିବାକୁ ବାଜିମାରିଥିବା ଭଦ୍ରଲୋକ କଣ୍ଡକ୍ଟରଙ୍କ ଅନୁରୋଧ ଯୋଗୁ ତାଙ୍କ ବାଜିର ଧାରା, ଉପଧାରା ବଦଳାଇ କହିଲେ—ଲୁନା ଆଉ ସାଇକେଲ ଏ ବସ୍‌କୁ ଓଭରଟେକ୍ କରିଗଲେ, ତୁମ କଥାରେ ମୁଁ ବରଦାସ୍ତ କଲି। କିନ୍ତୁ ପାଦଚଲା ମଣିଷଟେ ଯଦି ଏ ବସ୍‌କୁ ଓଭରଟେକ୍ କରିଯାଏ ତାହେଲେ ମୁଁ ବସ୍‌ରୁ ଓହ୍ଲାଇଯିବାକୁ ବାଧ୍ୟ ହେବି।

ଏକଥାରେ ବସ୍ ଭିତରଟା ହସରେ ଫାଟିପଡ଼ିଲା। ମନେ ହେଲା ସତେ ଯେପରି ହସଭର୍ତ୍ତି ବସ୍‌ଟେ ହଲି ଦୋହଲି ରସୁଲଗଡ଼ ଡେଇଁ କୁଆଖାଇ ପୋଲ ଉପରେ ଚଢ଼ୁଛି।

ଜୁନ୍ ମାସର ଗ୍ରୀଷ୍ମ ପ୍ରକୋପରେ ମୁହଁ ଉପରକୁ ଉଠି ଆସିଥିବା ଝାଳର ବୁଦ୍‌ବୁଦ୍‌ଗୁଡ଼ିକୁ ସରୋଜବାବୁଙ୍କ ପରି ବସର ସମସ୍ତ ଯାତ୍ରୀ ରୁମାଲରେ ପୋଛି ସଫା କରିଦେଉଥିଲେ। ଏଣିକି ଖୋଲା ରାସ୍ତାରେ ବସର ଗତି ନିଶ୍ଚୟ ବଢ଼ିବ। ବସ୍‌ର ଗତି ବଢ଼ିବା ସଙ୍ଗେ ସଙ୍ଗେ ବସ୍ ଭିତରେ ସଜନର ସୁଅ ଛୁଟିବ। ବସ୍ ଭିତର ଗରମଟା ନିଶ୍ଚୟ ଭାଙ୍ଗିବ।

କୁଆଖାଇ ପୋଲ ପାରିହେବା ପରେ ଅବଶ୍ୟ ବସ୍‌ର ଗତି ବଢ଼ିଲା। କିନ୍ତୁ ପଛରୁ ଆସୁଥିବା ପ୍ରତ୍ୟେକ ଗାଡ଼ିକୁ ବାଟ ଛାଡ଼ି ଆଡେଇ ଗଲାବେଳେ ଗତି କମିଯାଉଥିଲା, ଗିଅର ବଦଳୁଥିଲା। ମଟର, ସ୍କୁଟର, ମଟରସାଇକେଲ ସମସ୍ତେ ବସ୍‌କୁ ଅତିକ୍ରମ କରି ଯାଉଥିଲେ। ପୁନଶ୍ଚ ଗିଅର ବଦଳାଇ ବେଗ ବଢ଼ାଇବାକୁ ଉଦ୍ୟମ କରିବା ବେଳେ ଆଉ ଗୋଟେ ଗାଡି ପଛରୁ ମାଡି ଆସୁଥିବାର ଦେଖି ବାଟଛାଡି ଦେଉଥିଲା ବସ୍‌ଟି।

ବସ୍‌ର ସମସ୍ତ ଯାତ୍ରୀ ଏଥର ଡ୍ରାଇଭରକୁ ଥଟ୍ଟା, ପରିହାସ କରିବାକୁ ଲାଗିଲେ। ପଛରୁ ଦୁଇଚକିଆ ଯାନଟିଏ କି ଚାରିଚକିଆ ଯାନଟିଏ ଆସିବାର ଦେଖିବାମାତ୍ରେ ପାଞ୍ଚ, ଛଅଟି ସ୍ୱର ଦଉଡ଼ି ପରି ଏକାଠି ବଳି ହୋଇ ଗାଉଥିଲା—ବାଟ ଛାଡ, ବାଟ ଛାଡ଼। ଆସୁଛି ଦଶରାବଙ୍କାର ମେଢ଼, ଆହା ବାଟ ଛାଡ।

ଅନ୍ୟମାନେ ଏ ଗୀତ ସାଙ୍ଗରେ ତାଳ ଦେଇ ବସ୍ ଦେହରେ ବାଡ଼ା ବଜାଇବାରେ ଲାଗିଲେ। ଆଗରେ ଲୋକଟିଏ ଦେଖିଲେ ଯାତ୍ରୀମନେ ପାଟି କଲେ—ପେଏଁ, ପେଏଁ, ପେଏଁ।

ଯାତ୍ରୀମାନଙ୍କ କଣ୍ଠର ପେଏଁ ପେଏଁ ସହିତ ସ୍ୱର ମିଳାଇ ଡ୍ରାଇଭର ହର୍ଣ୍ଣ ବଜାଉଥିଲା—ପେଏଁ, ପେଏଁ, ପେଏଁ। ଆଗରେ ହମ୍ପଟିଏ ଦେଖିଲେ ଡ୍ରାଇଭର ଗାଡ଼ିର ଗତି ଧୀର କରି ଗାଡ଼ିର ଥାର୍ଡ଼ ଗିଅର ପକାଇଲା। ଯାତ୍ରୀମାନେ ଆଗରେ

ହମ୍ଟିଏ ଦେଖିଲେ ପାଟି କରି ଉଠୁଥିଲେ—ହଅ କାଳିଆ, ହଅ କସରା। ହଅ, ହଅ, ହଅ।

ବସ୍ ଭିତରେ ଥିବା ସମସ୍ତ ଯାତ୍ରୀ ନିଜର ପାଟି ଓ ହାତକୁ ମନଇଚ୍ଛା ବ୍ୟବହାର କରୁଥିଲେ। ଯାତ୍ରୀମାନଙ୍କ ପାଟିତୁଣ୍ଡ, ବସ୍ ବଡ଼ିରେ ବାଜା ବଜାଇବା ଓ ବସ୍‌ର ପେଁ ପେଁ ହର୍ଣ୍ଣ ମିଶି ଏକ ଅପୂର୍ବ ପରିବେଶ ସୃଷ୍ଟି କରୁଥିଲା। ଦଳେ କଲେଜ ପିଲା ପିକ୍‌ନିକ୍ ଯିବାବେଳେ ବସ୍ ଭିତରେ ଯେତିକି ପାଟିତୁଣ୍ଡ ହୁଏ, ଏ ବସ୍ ଭିତରେ ତାଠୁ ଅଧିକ ପାଟିତୁଣ୍ଡ ହେଉଥିଲା।

ସବୁଠୁ ଆଶ୍ଚର୍ଯ୍ୟ କଥା ବସ୍ ଡ୍ରାଇଭର ଏସବୁଥିରେ କିଛି ହେଲେ ପ୍ରତିକ୍ରିୟା ପ୍ରକାଶ କରୁ ନଥିଲା। ଏକାଗ୍ର ଚିତ୍ତରେ ଗାଡ଼ି ଚଳାଉଥିଲା। କଣ୍ଡକ୍ଟର ତା ନିଜ ସିଟ୍‌ରେ ମୂଷାଟିଏ ପରି ନୀରବି ଯାଇଥିଲା।

ଏମିତି କୌତୁକ ଭିତରେ ବସ୍ ଚାଲୁଥିବାବେଳେ ଜଣେ କହିଲେ—ରେଡ଼ିଓରୁ ମୁଁ ଥରେ ଗୋଟିଏ ନାଟକ ଶୁଣିଥିଲି। ଜଣେ ଅଧ୍ୟାପକ ଗୋଟିଏ ନୂଆ କାର୍ କିଣିଥିଲେ। ସିଏ ଦିନେ କଟକର ଚାନ୍ଦିନୀଚୌକରେ ହେଉଥିବା ଗୋଟିଏ ବାହାଘର ଭୋଜି ଖାଇବାକୁ ଯାଇଥିଲେ। ସେ ଭୋଜି ଖାଇବାକୁ ଆଉ ଅନେକ ଲୋକ ଯାଇଥିଲେ। ଅଧ୍ୟାପକ ଭୋଜି ଖାଇବା ଭିତରେ ତାଙ୍କର ଯେତେ ଚିହ୍ନା ପରିଚିତ ଲୋକ ଦେଖାହେଲେ ସମସ୍ତଙ୍କୁ ନିଜ କାର୍ କିଣିଥିବା ବିଷୟ କଥାପ୍ରସଙ୍ଗରେ କହିଲେ। ତା ସହିତ ସେମାନଙ୍କୁ କହିଲେ— ଆପଣମାନେ ଖାଇସାରି ସମସ୍ତେ ମୋ କାର ପାଖକୁ ଚାଲନ୍ତୁ। ମୋ କାରର ରଙ୍ଗ ଦୁଧପରି ଧଳା। ନମ୍ବର ଓ.ଆର୍.ସି.-୭୫୬୪୩୨। ପୋର୍ଟିକୋର ବାଆଁ ପାଖକୁ ଥୁଆ ହୋଇଛି। ମୁଁ ଆପଣମାନଙ୍କୁ ସମସ୍ତଙ୍କୁ ନିଜନିଜ ଘରେ ପହଞ୍ଚାଇ ଦେବି।

ସମସ୍ତେ ଭୋଜି ଖାଇ ସାରି କାର୍ ପାଖରେ ଏକାଠି ହେଲେ। ସେମାନେ ନିଜେ ନିଜେ ଗଣି ହେଲେ। ସେମାନଙ୍କ ସଂଖ୍ୟା ଚଉଦ। ଅଧ୍ୟାପକ ଆସି ପହଞ୍ଚିଲେ। ଗୋଟିଏ କାର ଭିତରେ ସାଧାରଣତଃ ଡ୍ରାଇଭର ସହିତ ଛଅ ଜଣ ଯିବା କଥା। କିନ୍ତୁ ଅଧ୍ୟାପକ ସମସ୍ତଙ୍କୁ କୌଣସିମତେ ଠେଲିଠାଲି, ଚାପିଚୁପି କାର୍ ଭିତରେ ଭର୍ତ୍ତି କରିଦେଲେ। ସତେ ଯେମିତି ଦିଆସିଲ ଖୋଳ ଭିତରେ ଦିଆସିଲ କାଠି। କାର୍ ଚାଲିଲା ହାଇକୋର୍ଟ ଦିଗରେ। ଜଣେ ଚାହିଁଲେ ହାଇକୋର୍ଟ ପାଖରେ ଓହ୍ଲାଇବାକୁ। କିନ୍ତୁ ଗାଡ଼ି ରହିଲା ନାହିଁ। ଆଉ ଜଣେ ଚାହିଁଲେ ଚୌଧୁରୀ ବଜାରରେ ଓହ୍ଲାଇବାକୁ, ସେଠି ବି ଗାଡ଼ି ରହିଲା ନାହିଁ। ଅଧ୍ୟାପକ ଭଦ୍ରଲୋକ କାର ଚଳାଉ ଚଳାଉ ତାଗିଦ୍ କଲେ—ଆପଣମାନେ ଧୀର ସ୍ଥିର ହୋଇ ବସନ୍ତୁ। ମୁଁ ସମସ୍ତଙ୍କୁ ନିଜ

ନିଜ ଜାଗାରେ ଛାଡ଼ିଦେବି।

ଜଣେ ପ୍ରତିବାଦ କଲେ—ଆମ ଜାଗା ଯେ ଚାଲି ଗଲାଣି। ଅଧ୍ୟାପକ ରାଗିଯାଇ କହିଲେ—କାହିଁକି ଗୋଟେ ପାଟି କରୁଛନ୍ତି, ଦୟାକରି ଚୁପ୍ କରନ୍ତୁ।

ଏହିପରି ଭାବରେ ବକ୍ସିବଜାର ଛକ, ମଙ୍ଗଳାବାଗ ଛକ, ରାଣୀହାଟ ଛକ କିମ୍ବା ରେଭେନ୍ସା କଲେଜ ଛକ କେଉଁଠି ନ ରହି କାର୍‌ଟି ଓଭରବ୍ରିଜ୍ ପାର ହୋଇ ଚାଲିଲା ଭୁବନେଶ୍ୱର ରାସ୍ତାରେ। କାର୍ ଭିତରେ ବସିଥିବା ସମସ୍ତ ଲୋକ ରଖ ରଖ ବୋଲି ପାଟି କରୁଥାନ୍ତି। ଉଚ୍ଛୃଙ୍ଖଳ କଲେଜ ପିଲାଙ୍କୁ ଶାନ୍ତ କରିବା ପରି ଅଧ୍ୟାପକ କହି ଚାଲିଥାନ୍ତି—ଆପଣମାନେ ଧୀର ସ୍ଥିର ହୋଇ ବସନ୍ତୁ, ଚୁପ୍ ରୁହନ୍ତୁ, ନୀରବ ରୁହନ୍ତୁ।

କାର୍ ଭିତରର ଲୋକମାନେ ପାଟି କରି ଉଠିଲେ— ଆଜ୍ଞା ଆମକୁ ଚୁପ୍ ନ କରାଇ କାର୍‌କୁ ଚୁପ୍ କରାନ୍ତୁ। ବ୍ରେକ୍ ଧରନ୍ତୁ, ଗାଡ଼ି ଅଟକାନ୍ତୁ। ବ୍ରେକ୍ ଧରନ୍ତୁ, ବ୍ରେକ୍ ଧରନ୍ତୁ।

ଏଥିରେ ଅଧ୍ୟାପକ ଭଦ୍ରଲୋକ ଉତ୍‌କ୍ଷିପ୍ତ ହୋଇ କହିଲେ—ଭାରି ନୂଆ କଥାଟେ ଆପଣମାନେ କହିଲେ, ମୁଁ କ'ଣ ଜାଣି ନେଇଁ ବ୍ରେକ୍ ଧରିଲେ ଗାଡ଼ି ରହିବ ବୋଲି ? ମୁଁ ପରା ସେଇ ବ୍ରେକ୍‌ଟାକୁ ପାଉ ନାହିଁ।

କାର୍ ଭିତରେ ବସିଥିବା ସମସ୍ତ ଲୋକ ଜାଣିଗଲେ ଅଧ୍ୟାପକ ଜଣେ ନୂଆ ଡ୍ରାଇଭର। ସିଏ ଗାଡ଼ିର ବ୍ରେକ୍ ଚିହ୍ନି ପାରୁନାହାଁନ୍ତି। ସେମାନେ ତାଙ୍କ ଜୀବନର ଆଶା ଛାଡ଼ି କାନ୍ଦିବାକୁ ଲାଗିଲେ।

ମୁଁ ଭାବୁଛି ହୁଏତ ଏ ବସ୍ ଡ୍ରାଇଭର ସେଇ ବ୍ରେକ୍‌ଟାକୁ ନ ଚିହ୍ନି ଥିବାରୁ କେବଳ ଗିଅର ବଦଳାଇ ଗତି ବେଗ କମାଇ, ହର୍ଣ୍ଣ ଦେଇ ଦେଇ ଆସ୍ତେ ଆସ୍ତେ ଚଳାଉଛି। କିଏ ଜାଣେ କଟକର ବାଦାମବାଡ଼ିରେ ପହଞ୍ଚିବା ପରେ ମଧ୍ୟ ଏ ଗାଡ଼ି ସେଇ ଧୀର ମନ୍ଥର ଗତିରେ ଆଗକୁ ଆଗକୁ ମାଡ଼ି ଚାଲିଥିବ କି ଷ୍ଟାଣ୍ଡରେ ଅଟକିବ ?

ସେ ଭଦ୍ରଲୋକଙ୍କ କଥାକୁ ପ୍ରଥମେ ପ୍ରଥମେ ବସ୍ ଭିତରର ସମସ୍ତ ଲୋକ ଉପଭୋଗ କରୁଥିଲେ। କିନ୍ତୁ କଥାର ଶେଷଭାଗ ଆଡ଼କୁ ସମସ୍ତଙ୍କ ମୁହଁ ଗମ୍ଭୀର ଓ ବିକୃତ ଦିଶିଲା। ଅନିଶ୍ଚିତ ଆଶଙ୍କାରେ ସମସ୍ତଙ୍କ ମଞ୍ଜ ହାଡ଼ ଭିତରେ ଭିତରେ ମଟ୍ ମଟ୍ ହୋଇ ଭାଙ୍ଗି ଚାଲିଥିଲା।

ଆଉ ଜଣେ କହିଲେ—ଆଜି କାଲି ସବୁ ଚାକିରି ଭିତରକୁ ପାଗଳ, ଅର୍ଦ୍ଧପାଗଳମାନଙ୍କର ଅନୁପ୍ରବେଶ ହେଲାଣି। କିରାଣି, ଡାକ୍ତର, ଇଞ୍ଜିନିୟର, ଓ.ଏ.ଏସ୍..

ଆନନ୍ଦ ଚନ୍ଦ୍ର ପହି

ଓ.ଏଫ୍.ଏସ୍. ଏମିତି ସବୁ ଚାକିରି ଭିତରକୁ କିଛି ପାଗଳଙ୍କର ଅନୁପ୍ରବେଶ ଘଟିଛି। ସେମାନେ କିଛି କାମ ନ କରି ବସି ବସି ବୁଲି ବୁଲି ଯାଉଛନ୍ତି। ଅନେକ ଦିନ ଅନୁପସ୍ଥିତ ରହୁଛନ୍ତି। ଦରମା ମିଳିବା ଦିନ ସେମାନଙ୍କୁ ଅଫିସିରେ ଦେଖିବାକୁ ମିଳେ। ସେମିତିଆ ପାଗଳ କି ଅର୍ଦ୍ଧପାଗଳ ଲୋକ ଯେ ଏ ଡ୍ରାଇଭର ଚାକିରି କ୍ଷେତ୍ରକୁ ପଶି ଆସି ନଥିବେ ସେ କଥା କିଏ କହିବ? ମୋର ମନେ ହୁଏ ଏଇ ଡ୍ରାଭର ସେ ପାଗଳ କି ଅର୍ଦ୍ଧପାଗଳ ଭିତରୁ ଗୋଟିଏ।

ବସ୍ ଭିତରେ ସମସ୍ତ ଯାତ୍ରୀ ଆଶଙ୍କାରେ ଆତଙ୍କିତ। କେଉଁ ମୁହୂର୍ତ୍ତରେ କ'ଣ ଯେ ଘଟିବ କହିହେବ ନାହିଁ। ଟିକେ ଆଗରୁ ବସ୍ ଭିତରେ ଉଠିଥିବା ହସ, କୌତୁକ, ଥଟା, ପରିହାସ ପରିବେଶ ହଠାତ୍ ବଦଳିଗଲା। ସମସ୍ତଙ୍କ ମୁହଁ ଆତଙ୍କିତ ଦିଶୁଥିଲା। ସମସ୍ତଙ୍କ ମୁହଁ ଉପରେ ବିନ୍ଦୁ ବିନ୍ଦୁ ଝାଳ।

ଏମିତି ଏକ ଆତଙ୍କ, ଆଶଙ୍କା ଭିତରେ ବସ୍ ଲାଗିଲା ବାଦାମବାଡ଼ି ବସ୍‌ଷ୍ଟାଣ୍ଡରେ। ସମସ୍ତେ ଖପ୍ ଖାପ୍ ବସ୍ ପେଟରୁ ତଳକୁ ଡେଇଁ ପଡ଼ିଲେ।

ବସ୍‌ରୁ ଓହ୍ଲାଇ ଗଲାବେଳେ ଦେହରୁ ଝାଳ ପୋଛି ସରୋଜବାବୁ ତାସଲ୍ୟ କରି କହିଲେ—ଏମିତି ଦକ୍ଷ ଡ୍ରାଇଭରକୁ ଜାତୀୟ ପୁରସ୍କାର ଦିଆଯିବା କଥା।

କଣ୍ଡକ୍ଟର ସଙ୍ଗେ ସଙ୍ଗେ ଉତ୍ତର ଦେଲା—ଆପଣମାନେ ହୁଏତ ଏ ଡ୍ରାଇଭରଙ୍କ ନାଆଁ ଆଗରୁ ଶୁଣି ଥିବେ କି ଖବର କାଗଜରେ ଯାଙ୍କର ଫଟୋ ବାହାରିଥିଲା ଦେଖିଥିବେ।

କଣ୍ଡକ୍ଟରଙ୍କ କଥାରେ ସମସ୍ତଙ୍କର କୌତୂହଳ ବଢ଼ିଗଲା। ଜଣେ କିଏ ପଚାରିଲେ—ଗଞ୍ଜେଇ, ଅଫିମ, ଚରସ ନା ହୀରୋଇନ୍? କେଉଁ ଅଭିଯାନରେ ଏ ମହାମାନବ ନାଆଁ କମେଇଛନ୍ତି? ଲୋକଟାର ଚେହେରା, ବାଘୁଆ ନିଶ ଆଉ ଡିମା ଡିମା ଆଖିରୁ ଜଣାପଡୁଛି ସିଏ ଜଣେ ଆତଙ୍କବାଦୀ।

କଣ୍ଡକ୍ଟର କହିଲା– ନା, ସେ ସବୁ କିଛି ନୁହଁ। ସେ ଜଣେ ଅତ୍ୟନ୍ତ ବିଶ୍ୱସ୍ତ, ସାଧୁ, ସଚ୍ଚୋଟ, ଦକ୍ଷ ଡ୍ରାଇଭର। ଗଲା ଜାନୁୟାରୀ ୨୬ ତାରିଖରେ ଜଣେ ଦକ୍ଷ ଡ୍ରାଇଭର ଭାବରେ ସିଏ ରାଜ୍ୟ ସରକାରଙ୍କ ପୁରସ୍କାର ପାଇଛନ୍ତି। ଯାଙ୍କ ନାଆଁ ବିଜୟ ପ୍ରତାପ ସିଂ।

କଣ୍ଡକ୍ଟରର କଥା ଶୁଣି ସମସ୍ତେ ହୋ ହୋ ହୋଇ ହସି ଉଠିଲେ। କିନ୍ତୁ କଣ୍ଡକ୍ଟର ଦବି ନଯାଇ କହିଲା—ଆପଣମାନେ ଅବିଶ୍ୱାସ କରୁଛନ୍ତି। କିନ୍ତୁ କଥାଟା ସତ। ତାଙ୍କର ଚାକିରି ଆଜିକି ପଚିଶ ବର୍ଷ ହେଲା। ସିଏ କେବେ ହେଲେ ଆକ୍ସିଡେଣ୍ଟ କରି ନାହାଁନ୍ତି। ତାଙ୍କ ଗାଡ଼ି କେବେହେଲେ କୌଣସି ସ୍ଥାନରେ ବିଳମ୍ବରେ

ପହଞ୍ଚୁ ନାହିଁ। ଆମର ଏଟା ଲାଇନ ବସ। ଠିକ୍ ଟାଇମରେ ବାଣପୁରରୁ ବାହାରି ଠିକ୍ ଟାଇମରେ ପାରାଦ୍ୱୀପରେ ପହଞ୍ଚେ। ଗାଡ଼ି ଚଳାଇବାବେଳେ ଏ ଡ୍ରାଇଭର ଗାଡ଼ି ଚାଳନାର ସମସ୍ତ ନିୟମ ମାନି ଗାଡ଼ି ଚଳାଉଛି। ଆଗରେ ଗାଡ଼ି ଦେଖିଲେ ହର୍ଣ୍ଣ ଦିଅନ୍ତି। ହମ୍ପ୍ ଦେଖିଲେ ଗିଅର ବଦଳାଇ ଗତି ମନ୍ଥର କରନ୍ତି। ସାଇଡ୍ ମାଗୁଥିବା ସମସ୍ତ ଗାଡ଼ି ପାଇଁ ରାସ୍ତା ଛାଡ଼ି ଦେଇ ଆଡ଼ ହୋଇ ଯାଆନ୍ତି। କଟକ ଭୁବନେଶ୍ୱର ରାସ୍ତାରେ ପଇଁତିରିଶ, ଚାଳିଶ କିଲୋମିଟରଠାରୁ ଅଧିକ ବେଗରେ ଗାଡ଼ି ଚଳାଇବା ମନା। ଆଜିକାଲି ଏସବୁ ନିୟମ କେହି ମାନୁ ନାହିଁ ବୋଲି ଆପଣମାନଙ୍କର ଧାରଣା ସବୁ ଅଲଗା ପ୍ରକାରର ହୋଇ ଯାଇଛି। ଆପଣମାନେ ଥଟ୍ଟା ପରିହାସ କରୁଛନ୍ତି। କିନ୍ତୁ ଆପଣମାନେ ନିଜ ନିଜର ଘଣ୍ଟା ଦେଖନ୍ତୁ। ଭୁବନେଶ୍ୱରରୁ କଟକ ଯେତିକି ସମୟ ଲାଗିବା କଥା ସେତିକି ସମୟ ଲାଗିଚି କି ନାହିଁ?

କଣ୍ଡକ୍ଟରଙ୍କ କଥାରେ ସମସ୍ତେ ବିସ୍ମିତ ହେଲେ। ଡ୍ରାଇଭରକୁ ଏତେ କଥା କହିଥିବାରୁ ମନେ ମନେ ଲଜ୍ଜିତ ହେଲେ। ଯିବା ପୂର୍ବରୁ ସମସ୍ତେ ଡ୍ରାଇଭର ଉପରେ ଥରେ ଥରେ ଦୃଷ୍ଟି ପକାଇଲେ। ଡ୍ରାଇଭର ପୂର୍ବ ପରି ନୀରବ ଓ ନିର୍ବିକାର ଭାବେ ଷ୍ଟିୟରିଙ୍ଗ ଧରି ବସ୍‌ରେ ବସିଥିଲା।



# ନରରାକ୍ଷସ

ଏକ ସମୟରେ ଅନେକ ସ୍ୱର। ସମସ୍ତଙ୍କ କଣ୍ଠରେ ଗୋଟିଏ କଥା। ମୋତେ ଶୀଘ୍ର ଦେ ଜଲିଲ! ମୁଁ ଅନେକ ବେଳୁ ଆସିଲିଣି।

ବାରମ୍ବାର ଚିତ୍କାର କରି ଜଲିଲ ମିଆଁର ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟା କରୁଥିଲେ ସମସ୍ତେ। କିନ୍ତୁ ଜଲିଲ ହାଣି ଚାଲିଥିଲା ଛେଳିର ଫରିଆ, ସିନା, ଲାଇନ୍ ଚାମ, ଗର୍ଦ୍ଦନ। ଦୁଇଫୁଟିଆ ଧାରୁଆ ରକ୍ତାକ୍ତ ଚାପଡଟା ମାଂସ ଉପରେ ନାଚି ଚାଲିଥିଲା। ଜଲିଲ୍‌ର ଆଖି ଥିଲା ହାଣୁଥିବା ଚାପଡ଼ ଓ ମାଂସ ଉପରେ। ଦୃଷ୍ଟି ଟିକେ ଗଡ଼୍‌ବଡ଼୍ ହେଲେ ହାତର ଆଙ୍ଗୁଳି ଗଡ଼ ଗଡ଼ ହୋଇ ଯିବାର ଆଶଙ୍କା। ତାର ଦୃଷ୍ଟି ମାଂସ ଉପରେ ଜମିକି ରହିଥିଲେ ବି ସେ ସମସ୍ତଙ୍କ କଥାକୁ ନିଘା ରଖିଥାଏ। କାହାକୁ କେମିତି ମଝିରେ ମଝିରେ ଜବାବ, ଦିଏ—ଟିକେ ସବୁର କର ବାବୁ! ଏଇଟାରୁ କିଛି ଦେଇ ହେବ ନେଇଁ। ସେ ବାବୁ ଭୋଜି ପେଇଁ ନେବେ ଆଠ କିଲୋ, ଏ ବାବୁଙ୍କର ମେସ୍ ପାଇଁ ଦୁଇ କିଲୋ। ସେ ବାବୁ ତ ବହୁତ ବେଳୁ ଆସିଲେଣି; ତାଙ୍କର କିଲେ। ଆପଣଙ୍କୁ ଆଉ ଗୋଟେ ମାଲ୍ କାଟିକି ଦେବି। ବଢ଼ିଆ ମାଲ୍ ଆଞ୍ଜା। ଆପଣଙ୍କ ଆଖି ସାମ୍ନାରେ କାଟିକି ଦେବି। ଏଠି କିଛି ଗଡ଼୍‌ବଡ଼୍ ନାହିଁ। ଆପଣ ଟିକେ ଚ଼ଲାବୁଲା କରି ଆସନ୍ତୁ। ଜାଫର୍! ଜାଫର୍! ଔର ଏକ୍‌ଟି ମାଲ୍ ବନାଓ।

ଆଉ କିଏ ଆପତ୍ତି କରେ—ଇଏ କ'ଣ ହଉଚି ଜଲିଲ: ଅଧ କିଲୋ ମାଂସରେ ଏତେ ଚର୍ବି ଆଉ ଦିଲ୍? ନା, ମୁଁ ଏ ମାଂସ ନେବି ନାଇଁ। ତୁ ଜାଣିଚୁ ମୋର ହାଇ ବ୍ଲଡ୍ ପ୍ରେସର୍ ଅଛି।

ଆଉ କିଏ ତାଗିଦ୍ କରେ—ମତେ ଆଗ ଦେ ଜଲିଲ! ମୁଁ ଆଉ ଅପେକ୍ଷା କରି ପାରିବି ନେଇଁ। ଜରୁରୀ କାମ ଅଛି।

ଆନନ୍ଦ ଚନ୍ଦ୍ର ପହି

କିଏ କହେ—ମୋର ଖାଲି କଲିଜା ଦରକାର। ଦୁଇ ଶହ କି ଅଢ଼େଇ ଶହ ଯାହା ପଡୁ ଦେ।

କିଏ ଅଭିମାନରେ କହେ—ଆର ଥରକ ମତେ କେବଳ ଗର୍ଦ୍ଦନ ଦେଇକି ଠକି ଦେଲୁ। ମୁଁ ଏଥର କେବଳ ପଛ ଫଡିଆ ଆଉ କଲିଜା ବ୍ୟତୀତ ଆଉ କିଛି ନେବି ନେଇଁ।

ଆଉ କିଏ ଚଡ଼ା ସ୍ୱରରେ କୁହେ—ମତେ ଚାମ, ସିନା, ଆଉ କଲିଜା ମିଶାଇ କିଲେ ଦେ। ନାଇଁ, ନଦେବୁ ଯଦି ନେବି ନାହିଁ। ସେମିତି ଖାଲି ହାତରେ ଫେରିଯିବି। କିନ୍ତୁ ସେଗୁଡା ନେବି ନାହିଁ।

ଚଲିଲ କିଛି ନ କହି ମାଂସ କଟା ବନ୍ଦ କରି ଛୁରୀଟାଏ ଧରି ଉଠି ଆସିଲା। ପଟାପଟା ଲୁଙ୍ଗି, ପୃଥୁଳ ପେଟ, ଦୀର୍ଘ ଶରୀର ସାଙ୍ଗକୁ ବାଘୁଆ ନିଶ। ଯମ ପରି ଭୟଙ୍କର ମୂର୍ତ୍ତି। ଗୋଟିଏ ବାଉଁଶ ତାଟି ଆଡୁଆଳରେ ସାତ ଆଠଟା ଖାସି ବନ୍ଧା ହୋଇଛନ୍ତି। ଚଲିଲ ତାଟି ଆଡେଇ ଖାସିମାନଙ୍କ ଆଡକୁ ମାଡ଼ିଗଲା। ତା ପଛେ ପଛେ କିଛି ଲୋକ ଗୋଡ଼େଇ ଆସିଲେ।

ତାଟିର ଗୋଟେ କଡ଼କୁ ଆଗରୁ ହଲାଲ୍ ହୋଇଥିବା ଖାସିମାନଙ୍କ ପୁଣ୍ଡା, ଚମଡ଼ା, ଅନ୍ତନାଡ଼ି, ଲେଣ୍ଡି, ମୂତ, ରକ୍ତ ଏକାଠି ଗଦା ହୋଇଛି। କଦର୍ଯ୍ୟ କଦାକାର ସେ ଦୃଶ୍ୟ।

ଚଲିଲ ଦୁଇ ତିନିଟା ଖାସିଙ୍କର ଅଣ୍ଡାର ମେରୁ ହାଡକୁ ଗୋଟେ ହାତରେ ଟେକି ସେମାନଙ୍କ ଓଜନ ଆନ୍ଦାଜିଲା। ଗୋଟେ ଖାସିର ବେକରୁ ପଘା ଫିଟାଇ କଚ କଚ କରି ଛୁରୀ ଚଳାଇ ଦେଲା। ପେଁ ପାଁ ଶବ୍ଦ କରି ତଣ୍ଟିବାଟେ କିଛି ରକ୍ତ ଓ ପବନ ବାହାରି ଆସିଲା। ହୋରି ଖେଳର ରଙ୍ଗ ପିଚକାରୀ ପରି କିଛି ରକ୍ତ ଛିଟିକି ଆସି ଦୁଇ ତିନିଜଣ ଲୋକଙ୍କ ପ୍ୟାଣ୍ଟ ଆଉ ସାର୍ଟକୁ ରଙ୍ଗାଇ ଦେଲା। ସେମାନେ ଚମକି ପଡ଼ି ଟିକେ ଦୂରେଇ ଗଲେ।

ଖାସିର ଦେହରୁ ମୁଣ୍ଡକୁ ଅଲଗା କରି ପକାଇ ଦେଲା ଚଲିଲ୍। ମୁଣ୍ଡ ଗଦାରେ ଅନେକ ମୁଣ୍ଡଙ୍କ ଖୋଲା ଆଖି ବିସ୍ମୟ, ଦୁଃଖ ଆଉ ବେଦନାରେ ଡିମା ଡିମା ଦିଶୁଥିଲା। ମୁଣ୍ଡ ନ ଥିବା ଦେହଟା ଛଟପଟ୍ ହୋଇ ସ୍ଥିର ହୋଇଗଲା। ହେଲ୍ପର ଛାଫର ଗୋଟିଏ ଦଉଡ଼ିରେ ଖାସିଟାର ଦୁଇ ଗୋଡ଼କୁ ବାନ୍ଧି ଟାଙ୍ଗି ଦେଲା। ଛୁରୀଟେ ଧରି ଖାସି ଦେହରୁ ଚମଡ଼ା ଉତାରିବା କାମରେ ଲାଗିଗଲା।

ଚଲିଲ ଏଥର ଫେରି ଆସିଲା ମାଂସ କଟା ଗଦିକୁ। ଲୋକମାନଙ୍କ ମଧ୍ୟରେ ଆଉ ବ୍ୟସ୍ତତା ନାହିଁ। ସମସ୍ତେ ଚାହିଁ ରହିଲେ ନୂଆ ଖାସିଟା ଛଲା ହୋଇ

ଆସିଲେ ଭଲ ମାଂସ ମିଳିବ। ତିନିପା କଟା ହୋଇ ବିକ୍ରି ସରିଥିବା ଏ ଖାସିଟାର ଅନେକ ଜିନିଷ ସରିଗଲାଣି। ସିନା ଥିଲେ ଚାମ୍ ନାହିଁ, ଆଗଫଡ଼ିଆ ଥିଲେ ପଛ ଫଡିଆ ନାହିଁ, କଲିଜା ନାହିଁ।

ଭୁବନେଶ୍ୱରରେ ଅନେକ ମାଂସ ଦୋକାନ ଥିଲେ ବି ଜଲିଲ ଦୋକାନରେ ପ୍ରବଳ ଭିଡ଼। ଅନ୍ୟଠି ମୁନିସିପାଲଟିର କଂସେଇଖାନାରେ କଟା ଷ୍ଟାମ୍ପ ଦିଆ ମାଂସ। ଖାସି, ମାଈଛେଳି, ବୁଢ଼ୀ ଛେଳି, ମେଣ୍ଢା କିଛି ବାରି ହୁଏନା, ଚିହ୍ନି ହୁଏନା। ଆଜିର କି କାଲିର ଜାଣି ହୁଏନା। କିନ୍ତୁ ଜଲିଲ୍ ସମସ୍ତଙ୍କ ସାମନାରେ ଖାସି କାଟିକି ଦିଏ। ଅନ୍ୟ ଦୋକାନୀ ଓଜନରେ ଠକନ୍ତି, ମାଂସରେ ପାଣି ମିଶାନ୍ତି, କିନ୍ତୁ ଜଲିଲର ସେ ସବୁ ଗଲ୍ତି ନାହିଁ।

ମାଂସ କିଣା ପାଖରେ ଅପେକ୍ଷାରତ ବାବୁମାନଙ୍କ ଭିତରେ ଅନେକ ଆଲୋଚନା ପଡ଼େ। ମାଂସ ନହେଲେ ରବିବାରଟା ପାଣିଚିଆ ଲାଗେ ବୋଲି ଜଣେ କହିବା ବେଳେ ଆଉ ଜଣେ କହେ ମାଂସ ନ ଖାଉଥିବା ମଣିଷର ଜୀବନ ଅସଂପୂର୍ଣ୍ଣ। ମାଂସ ନ ଖାଉଥିବା ମଣିଷକୁ ଘାସୁଆ କହିବା ଯଥାର୍ଥ ହେବ। ଆଉ କିଏ କହେ ହରିଣ ମାଂସ ମୁଁ ଚାଖି ନାହିଁ। କିନ୍ତୁ ମୋ ମତରେ ଖାସି ମାଂସ ସବୁ ମାଂସଠୁ ସୁଆଦିଆ। ଆଉ ଜଣେ କହେ – ଅବଶ୍ୟ କିଛି ଲୋକ କୁକୁଡ଼ା ମାଂସର ବଡ଼େଇ ଗାଆନ୍ତି, କିନ୍ତୁ ମୋ ଜାଣିବାରେ କୁକୁଡ଼ା ମାଂସଟା ଖାଇବାରେ ପୌରୁଷ ନାହିଁ। ମାଂସ ଗୁଡାକ ଛେନା ପରି କଅଁଳ, ମାଛ ପରି ହାଲୁକା। କଣ୍ଟା ଆଉ ଗଣ୍ଠି ସୋଲ ପରି ଫମ୍ପା।

ବେଳେବେଳେ ଆଲୋଚନାଟା ମାଂସ ଉପରୁ ଉଠି ଜଲିଲ ଉପରେ ଜମିଯାଏ। ଜଲିଲ୍ କୁଆଡେ ଆଗରୁ ମିଲିଟାରୀରେ ଥିଲା। ତା ଜୀବନକାଳ ଭିତରେ ଛେଳି ଅପେକ୍ଷା ମଣିଷ ମାରିଚି ବେଶୀ। ମିଲିଟାରୀରୁ ଫେରିବା ପରେ ତାକୁ ମିଳିଥିଲା ଗୋଟେ ତୃତୀୟ ଶ୍ରେଣୀ ସିଭିଲ ସର୍ଭିସ। କିନ୍ତୁ ଜଲିଲ ଚାକିରି କଲା ନାହିଁ। ମିଲିଟାରୀରେ ଥିଲା, ମଣିଷ ମାରୁଥିଲା, ଏବେ ଛେଳି ମାରୁଚି। ହାଣିବା ଜଲିଲ୍‌ର ହବି। ଯେଉଁ ଦିନ ଜଲିଲ ଚାରି ପାଞ୍ଚଟା ଛେଳିରୁ ଅଧିକ ମାରି ନ ଥାଏ ସେଦିନ ତାକୁ ଭଲ ନିଦ ହୁଏ ନାହିଁ। ରାତିଯାକ ଏପଟ ସେପଟ ହୁଏ। ରାତିର ଆକାଶରୁ ତାରା ଗଣିବାରେ ରାତିଟା କଟେଇ ଦିଏ।

ଚାଫର ଛାଲି ସାରି ଖାସିଟା ଆଣି ଜଲିଲ୍‌କୁ ଦେଲା। ସମସ୍ତେ ପୁଣି ଜଲିଲ୍ ଚାରିପଟେ ଘେରିଗଲେ। ପ୍ରଥମେ ମାଂସ ନେବା ପାଇଁ ପ୍ରତ୍ୟେକ ଲୋକ ଅନୁରୋଧ କଲେ। କିଏ ବଡ଼ ପାଟିରେ ଚିତ୍କାର କରି, କିଏ ଜଲିଲ୍‌ର ଏକଦମ

ପାଖକୁ ଲାଗିଯାଇ, ଆଉ କିଏ ଆଗତୁରା ଟଙ୍କା ଯାଚି ଜଲିଲର ଦୃଷ୍ଟି ଆକର୍ଷଣ କଲେ। ଜଲିଲ କିନ୍ତୁ ଅବିଚଳିତ। ଥରଟେ ବାବୁମାନଙ୍କ ଉପରେ ଆଖି ପହଁରାଇ ଆଣି କହିଲା — ଆପଣମାନେ ସବୁର୍ କରନ୍ତୁ, ମୁଁ ସମସ୍ତଙ୍କୁ ଦେବି।

ହଠାତ୍ ଭିଡ଼ ଠେଲି ପ୍ରବେଶ କଲା ଜଲିଲର ପୁଅ ସମ୍‌ସର୍। ଜଲିଲ ହାତରେ ମାଂସ କଟା ଚାପଡଟା ଥମି ଗଲା। ସମ୍‌ସର୍ କାନ୍ଦୁଚି।

ସମ୍‌ସର୍ କାନ୍ଦି କାନ୍ଦି କହିଲା — ଆବାଜାନ୍! ଆବାଜାନ୍! ଆମ ଅମିନାକୁ ଆମ ପାଖ ପଟ୍ଟନାୟକ ଘର କୁକୁର କାମୁଡି ଦେଇଚି। ତା ଶଙ୍କନଳା ଫୁଟି ।ଇଚି।ବ କେତେ ନାହିଁ କେତେ ରକତ ଗଲାଣି। ଅମିନା ଭାରି ବିକଳ ହଉଚି। ଅମିଜାନ୍ ଡ଼ାକୁଚି ତମେ ଜଲ୍‌ଦି ଆସ ଆବାଜାନ।

ଜଲିଲ ସବୁ ଫିଙ୍ଗା ଫୋପଡା କରି ସମ୍‌ସର ସାଙ୍ଗରେ ଧାଇଁଲା। ତା ଆଖି ଛଳ ଛଳ। ମୁହଁଟା ଦୁଃଖ ଆଉ ଆଶଙ୍କାରେ ଥମ୍ ଥମ୍।

କିଏ ଜଣେ ଜାଫରକୁ ପଚାରିଲା — ଏ ଅମିନା କିଏ କିରେ ଜାଫର? ଅମିନା କ'ଣ ଜଲିଲ୍‌ର ଝିଅ? କେତେ ବର୍ଷର ଝିଅ ଅମିନା? ଜଲିଲ୍‌ର କେଉଁଟା ଝିଅ?

ଜାଫର କହିଲା, ଅମିନା ତାଙ୍କ ନେଉଳ। ଝିଅ ନୁହଁ।

ଆଉ ଜଣେ କିଏ କହିଲା — ସାମାନ୍ୟ ନେଉଳଟା ପାଇଁ କଣ ଜଲିଲ୍ ମିଆଁ ଏତେ ବ୍ୟସ୍ତ ବିବ୍ରତ ହୋଇ ମାଂସ ବିକ୍ରି ଛାଡି ପଳେଇଲା? ମତେ ଲାଗୁଛି ଅମିନା ନେଉଳ ନୁହଁ, ତାର ବଡ଼ିଲା ଝିଅ। ହୁଏତ ତାକୁ କୋଉ ଟୋକା ଉଠେଇ ନେଇଚି। ଏତେ ଲୋକରେ ସେ କଥାଟା ପ୍ରଘଟ ନ କରିବା ପାଇଁ କୁକୁର କାମୁଡ଼ିବା କଥା ସମ୍‌ସର କହିଲା।

ଜାଫର ଆପତ୍ତି କଲା — ନା, ଜଲିଲ ଭାଇର ଝିଅ ନାହିଁ। ସେଇ ନେଉଳକୁ ସିଏ ଝିଅ କରି ପାଳିଥିଲା। ଫୁଲବାଣୀରୁ ଛେଳିଟ୍ରକ ଧରି ଭୁବନେଶ୍ୱର ଆସିବା ବେଳେ ଏଇ ଅମିନାର ମାଆ ରାସ୍ତା ଉପରେ ଟ୍ରକ୍‌ତଳେ ଚାପାପଡି ଦଳି ହୋଇଗଲା। କିନ୍ତୁ ଏଇ ଅମିନା ଚକ ସନ୍ଧିରେ ରହି ବଞ୍ଚିଗଲା। ସେଇ ନେଉଳ ଛୁଆଟିକୁ ଟ୍ରକ ତଳୁ ଗୋଟେଇ ଆଣି ତାକୁ ଝିଅ ପରି ପାଳିଥିଲା ଜଲିଲ୍ ଭାଇ। ପ୍ରତିଦିନ ତାକୁ ସଜାଉ ଥିଲା। ଅମିନାର ପାଦରେ ଘୁଙ୍ଗୁର, କାନରେ ସୁନା ଫାଶିଆ, ବେକରେ ରୁପା ଚେନ୍। ମଣିଷ ପିଲାଟିଏ ପରି ଅମିନା ତାଙ୍କର ବୋଲ ମାନୁଥିଲା। କୋଳରେ ପଶୁଥିଲା, ମାଛ ଖାଉଥିଲା, ଦୁଧଭାତ ଖାଉଥିଲା। ତାଙ୍କ ବିଛଣାରେ ଶୋଉଥିଲା।

ଆନନ୍ଦ ଚନ୍ଦ୍ର ପତି

ଜଣେ କିଏ ଜାଫର କଥାର ପ୍ରତିବାଦ କଲା— ପ୍ରତିଦିନ ପନ୍ଦର କୋଡ଼ିଏ ଛେଳି ହାଣୁଥିବା ଜଲିଲ ମିଆଁ ପରି ନୃଶଂଶ କଂସେଇ ସାମାନ୍ୟ ନେଉଳଟାକୁ କୁକୁର କାମୁଡ଼ିଥିବା କଥା ଶୁଣି ଏତେ ବ୍ୟଥିତ ହେବା କଥାଟା ମୋ ମନକୁ ପାଉ ନାହିଁ।

ସମସ୍ତେ ଅବିଶ୍ୱାସ ଆଖିରେ ଜାଫରକୁ ଚାହିଁଲେ। ଜଲିଲ ଭାଇର ଅମିନା ପ୍ରତି ଥିବା ସ୍ନେହ, ଶ୍ରଦ୍ଧା କଥାଟା ଏ ଲୋକମାନଙ୍କୁ କେମିତି ବୁଝାଇବ, ତାହା ନିଜେ ନ ବୁଝିପାରି ଜାଫର ବୋକା ବୋକା ଆଖିରେ ସେମାନଙ୍କୁ ଚାହିଁ ରହିଲା।

ଲୋକମାନଙ୍କ ଭିତରୁ ଜଣେ ତାଗିଦ୍ କଲା—କିରେ ଜାଫର! ତୁ ଏମିତି ଭେଲ୍‌କା ପରି ଚାହିଁଚୁ କ'ଣ? ଦେ, ମାଂସ ଦେ। ଜଲିଲ କେତେ ବେଳେ ଫେରିବ ତାର ଠିକଣା ନାହିଁ। ସିଏ ଫେରିବା ପର୍ଯ୍ୟନ୍ତ ଆମେ ଅପେକ୍ଷା କରି ପାରିବୁ ନାହିଁ।

ଜାଫର କିଛି ନ କହି ମାଂସ ବିକ୍ରି ଗଦି ଉପରକୁ ଉଠିଗଲା। ଅନେକ ଜଣ ତା ଚାରି ପାଖରେ ଚିତ୍କାର କରି ଉଠିଲେ—ମୋତେ କିଲେ ଦେ ଜାଫର। ମତେ ଦେଢ କିଲୋ ଦେ। ମତେ ଅଧ କିଲେ ଦେ। ମୁଁ ଆଗ ଫଡ଼ିଆ ଆଉ ଚାମ୍ ନେବି। ମୁଁ ସିନା ଆଉ କଲିଜା ନେବି। ପଛ ଫଡ଼ିଆରୁ କିଛି ଦେଲେ ଚଳିବ।

ଜାଫର ସମସ୍ତଙ୍କ କଥା ଶୁଣିଲା। ସେମାନଙ୍କ ବରାଦ ମୁତାବକ ଯଥା ସମ୍ଭବ ଝାସି ଦେହର ବିଭିନ୍ନ ଅଂଶର ମାଂସ ସେମାନଙ୍କୁ ଦେଲା। ପଲିଥିନ ପୁଡିଆରେ ଝାସି ମାଂସ ଧରି ଫେରି ଯାଉଥିବା ମଣିଷମାନେ ହଠାତ୍ ଜାଫର ଆଖିରେ ରାକ୍ଷସ ପାଲଟି ଯାଉଛନ୍ତି। ଜାଫର ପୁଣି ଧରେ ଆଖି ମଳି ଚାହିଁଲା ସେମାନଙ୍କ ହାତରେ ପଲିଥିନ ଭିତରେ ଥିବା ଛେଳି ମାଂସ ମଣିଷ ମାଂସ ପାଲଟି ଯାଉଛି। ମାଂସ ପୁଡ଼ିଆ ହାତରେ ଧରି ଯାଉଥିବା ଲୋକମାନଙ୍କ ହାତ ଗୋଡର ନଖ, ପାଟିର ଦାନ୍ତ ମୁନିଆଁ ଓ ବଡ଼ ବଡ଼ ଦିଶୁଛି। ଲମ୍ବ ଲମ୍ବ ପାଦ ପକାଇ ଡେଙ୍ଗା ଡେଙ୍ଗା ରାକ୍ଷସମାନେ ଯେମିତି ବାହୁଡ଼ି ଯାଉଛନ୍ତି ତାଙ୍କ ଘରକୁ, ରାକ୍ଷସ ଓ ରାକ୍ଷସୀମାନଙ୍କ ମେଳକୁ ଯେଉଁମାନେ ଘରେ ନଖ, ଦାନ୍ତ ପଟେଇ ବସିଛନ୍ତି ମାଂସ ଖାଇବାକୁ, ହାଡ଼ ରେକେଟିବାକୁ, ଝୋଳ ହାପୁଡ଼ିବାକୁ।

ଜାଫର ଚାହିଁଥିଲା ସେମାନଙ୍କୁ। ସେମାନେ ଦୂରକୁ ଦୂରକୁ ଚାଲିଯାଉଥିଲେ। ଜାଫର ଆଖିରୁ ସେଇ ରାକ୍ଷସମାନଙ୍କ ଛବି ଲିଭି ଆସିବା ବେଳକୁ ଆଉ ଗୋଟିଏ ଛବି ସ୍ପଷ୍ଟ ହୋଇ ଆସୁଥିଲା। ସେ ଛବିଟି ନିକଟରୁ ନିକଟତର ହେଉଥିଲା। ସେ ଛବିଟିକୁ ଚିହ୍ନିଲା ଜାଫର। ସେ ଛବି ଭିତରେ ଥିବା କୁନି ପିଲାଟି ନିଜେ

ଚାଦର। ଶିଶୁ ଜାଫର ପିନ୍ଧିଛି କଳା ହାପ୍ ପ୍ୟାଣ୍ଟ। ପ୍ୟାଣ୍ଟରେ ଆଗ ବଟନ୍ ନାହିଁ। ବାଆଁ ହାତଟା ପ୍ୟାଣ୍ଟକୁ ଅଣ୍ଟା ପାଖରେ ସମ୍ଭାଳି ଧରିଛି। ପଛ ପଟ ପ୍ୟାଣ୍ଟ ଦୁଇଟି ଜାଗାରେ ଛିଣ୍ଡି ଯାଇଛି। ଚାଦରର ହାପ୍ ପ୍ୟାଣ୍ଟ ଫୁଟି ତାର ପିଚା ଦୁଇଟି ପ୍ୟାଣ୍ଟ ଭିତରୁ ମୁହଁ କାଢ଼ିଛି।

ଜାଫର ମନେ ପକାଇଲା—ତା' ନାଆଁ ସେତେବେଳେ ଜାଫର ନ ଥିଲା, ଥିଲା ରବି। ତା ବାପାକୁ ସିଏ ଦେଖିନାହିଁ। ସିଏ କୁଆଡେ ତା ଜନ୍ମ ଆଗରୁ ମରି ଯାଇଥିଲା। ତା' ମାଆ ଗୋଟେ ଝଡବର୍ଷା ରାତିରେ କାହା ଘରକୁ କାମ କରିବାକୁ ଯାଇଥିଲା। କାମ କରି ଫେରିବା ବେଳେ କିଏ ଦିଇଟା ଟୋକା ତାକୁ ଆମ୍ବତୋଟାକୁ ଟେକି ନେଲେ। ତା ମାଆ ଆଉ ଫେରିଲା ନାହିଁ। ଘରକୁ ଫେରିଲା ତାର ଅଧା ଲଙ୍ଗଳା ମଲା ଦିହଟା। ରବିକୁ ସବୁ ଅନ୍ଧାର ଦିଶିଲା। ସେଇ ଅନ୍ଧାର ରାତିରେ ସିଏ ଘରୁ ଗୋଡ଼ କାଢି ବାହାରକୁ ପଳେଇ ଆସିଲା; କାରଣ ବାହାର ଅପେକ୍ଷା ଘରଟା ତାକୁ ଅଧିକ ଭୟଙ୍କର ଲାଗିଲା।

ଗାଆଁଠୁ ଅନେକ ଦୂରକୁ ରାତିଟା ଭିତରେ ଚାଲିଗଲା ରବି। ତା ଦେହ, ଗୋଡ଼, ହାତ ଅବସ ହେଲା ବେଳକୁ ସିଏ ଗୋଟିଏ ଝଙ୍କା ବରଗଛ ମୂଳେ ବସି ପଡ଼ିକୁ ଚାହିଁଲା। ତା ଗାଆଁଟା ଅନେକ ପଛରେ ରହିଲାଣି। ଉଠିବାକୁ ତାର ବଳ ପାଉ ନାହିଁ। ପେଟରେ ଭୋକ ଜଳୁଚି। ଭୋକର ନିଆଁ ଲିଭାଇବା ପାଇଁ ପାଟିବାଟେ ପୋଷ ପୋଷ ପାଣି ପେଟ ଭିତରକୁ ଡାଳିଲା। ସେ ନିଆଁ ନିଭୁ ନାହିଁ କି ଥମୁ ନାହିଁ। ଅନ୍ଧାର ମାଡି ଆସୁଚି ସମୁଦ୍ର ଲହଡ଼ି ପ୍ରମାଣେ।

ହଠାତ୍ ରବି ମୁହଁରେ ଗୋଟେ ଉଜ୍ଜ୍ୱଳ ଆଲୁଅ ପଡ଼ିଲା। ଏତେ ଆଲୁଅକୁ ସିଏ ଚାହିଁ ପାରିଲା ନାହିଁ। ଆଖି ମିଟି ମିଟି କଲା। ତା ଆଗରେ ତିନିସେଲିଆ ଟର୍ଚ୍ଚ ଧରି ଠିଆ ହୋଇଛି ଗୋଟେ ନିର୍ଘାତିଆ ମଣିଷ। ରବି କାନ୍ଦି ଉଠିଲା। ଭୋକଠୁ ଆରମ୍ଭ କରି ମାଆ ମରିବା ଆଉ ଗାଆଁ ଛାଡିବା ସବୁ କଥା କାନ୍ଦ କାନ୍ଦ ହୋଇ କହିଲା। ସେ ମଣିଷଟା ସବୁ ଶୁଣିଲା। ତାକୁ କାନ୍ଧରେ ପକାଇ ଘରକୁ ନେଲା। ଖାଇବାକୁ ଦେଲା। ତା ନିଜ ଘରେ ରଖାଇଲା।

ଏଇ ମଣିଷଟା ଥିଲା ଜଲିଲ ମିଆଁ। ଜଲିଲ ଭାଇ ତାକୁ ଡାକେ ଜାଫର ନାଆଁରେ। ସେଇ ଦିନଠୁ ରବିର ଦେହରେ ଜାଫର ପଶି ଚାଲବୁଲ୍ କଲା। ମୁସଲମାନ୍ ହେଲା। ମୁସଲମାନଙ୍କର ସବୁ ନୀତି, ନିୟମ ମାନିଲା। ମସଜିଦ୍ ଯାଇ ନମାଜ ପଢ଼ିଲା। ରୋଜା ମନେଇଲା; କିନ୍ତୁ କାହିଁକି କେଜାଣି ମାଂସ ତାକୁ ରୁଚେ ନାହିଁ। କେବେ କେମିତି କେହି ଯୋର ଜବରଦସ୍ତ ତା ପାଟିରେ ମାଂସ ପୂରାଇ ଦେଲେ ସିଏ ବାନ୍ତି କରି ପକାଏ। ଅନେକ ଥର ତା ମାଆର ଅଧା ଲଙ୍ଗଳା ଦେହଟାକୁ

ସିଏ ରାତିରେ ସ୍ୱପ୍ନ ଦେଖେ। ତା' ମାଆକୁ ସ୍ୱପ୍ନ ଦେଖିବାବେଳେ ସିଏ ଚିତ୍କାର କରେ। ଅନ୍ୟମାନେ ପଚାରିଲେ କିଛି କହେ ନାହିଁ। କେବଳ କ୍ରୋଧ, ଭୟ ଆଉ ଆଶଙ୍କାରେ ତା ଦେହଟା କଟାଛେଳିର ଦେହ ପରି ଠକ୍ ଠକ୍ ଥରୁଥାଏ।

ଅନେକ ଥର କଟା ଛେଳିର ଛାଲ ଉତାରିବା ବେଳେ ଜାଫରର ଅବଚେତନ ମନ ଭିତରକୁ ଓହ୍ଲେଇ ଆସେ ତା ମାଆର ଅଧା ଲଙ୍ଗଳା, ଅଧାଚିରା ଦେହଟା। ଜାଫର ମୂର୍ଚ୍ଛା ହୋଇ ପଡିଯାଏ। ଚଲିଲ ବ୍ୟସ୍ତ ହୋଇ ତାକୁ ଡାକ୍ତରଖାନା ନିଏ। କିନ୍ତୁ ଡାକ୍ତରଖାନା ପହଞ୍ଚିବା ଆଗରୁ ଜାଫର ସ୍ୱାଭାବିକ ହୋଇଯାଏ।

ଏବେ କିନ୍ତୁ ଆଗ ପରି ଛେଳି ଛାଲିବା ବେଳେ ସିଏ ମୂର୍ଚ୍ଛା ଯାଉ ନାହିଁ। ସବୁ ଦେହସୁହା ହୋଇଗଲାଣି। କିନ୍ତୁ କେବଳ କେମିତି ତା ମାଆର ସେଇ ଭୟଙ୍କର ଲଙ୍ଗଳା ଦେହଟାର ସ୍ୱପ୍ନ ତାକୁ ଭୟଭୀତ କରାଉଛି।

କିଏ ଜଣେ ସାଇକେଲ୍‌ରେ ଧଇଁ ସଇଁ ହେଇ ଖବର ଦେଲା ଚଲିଲ୍ ମିଆଁ ଉପରେ ଟ୍ରକ୍ ଚଢିଯାଇଚି। ତା ଅନ୍ତବୁଜୁଳା ବାହାରି ପଡିଛି।

ଜାଫର ପବନ ବେଗରେ ସାଇକେଲ ଉଡ଼ାଇଲା। ସି.ଆର୍.ପି. ଛକ ଚାରି ପାଖ ଲୋକ ବେଢିଛନ୍ତି। ପିମ୍ପୁଡ଼ି ଗଳିବାକୁ ବାଟ ନାହିଁ। ଚଲିଲ ପଡ଼ିଛି ମୁହଁ ମାଡ଼ି। ପେଟରୁ ଅନ୍ତବୁଜୁଳା ବାହାରି ପଡିଛି। ପିଠିର ଛାଲ ଉତୁରି ଯାଇ ଠାଏ ଠାଏ ମେଞ୍ଚା ମେଞ୍ଚା ମାଂସ ବାହାରି ପଡିଛି। ଚାରିକଡ଼େ ମୁଣ୍ଡା ମୁଣ୍ଡା ରକ୍ତ। ଚଲିଲ୍‌ର ମୁଣ୍ଡଠୁ ଅଳ୍ପ ଦୂରରେ ଅମିନା ଟ୍ରକତଳେ ଚାପି ହୋଇ ଚଟଣି ହୋଇ ଯାଇଛି। ନେଉଳଟିର ମାଂସ ଓ ଚମଡ଼ା ପିଚୁ ରାସ୍ତାରେ ନେସି ହୋଇଯାଇଛି।

ଚଲିଲର ଲୁଙ୍ଗିରେ ସାଲୁବାଲୁ ହୋଇ ଲାଗିଛି ଛେଳି ରକ୍ତ। ଛେଳି ମାଂସ କାଟୁଥିବା, ଛେଳିର ବେକ କାଟୁଥିବା, ମାଂସ ବିକ୍ରି କରୁଥିବା ଚଲିଲ ନିଜେ ମଣିଷରୁ ମାଂସ ପାଲଟି ଯାଇଛି।

ନେଉଳକୁ ଡାକ୍ତରଖାନା ନେଉଥିବା ବାଟରେ ସି.ଆର.ପି.ଛକରେ ନେଉଳଟା ଚଲିଲ ହାତରୁ ତଳକୁ ଡେଇଁ ପଡିଲା। ଆଗରୁ ଟ୍ରକ୍ ମାଡ଼ି ଆସୁଥିଲା। ଚଲିଲ୍ ନେଉଳକୁ ଟ୍ରକ ମୁହଁରୁ ବଞ୍ଚାଇବା ପାଇଁ ଟ୍ରକ୍ ଆଗରେ ନଇଁ ପଡିଲା। ଟ୍ରକ୍‌ଟା ଚିପି ଦେଇଗଲା ଚଲିଲ ସହିତ ଅମିନାକୁ (ନେଉଳକୁ)।

ଭରା ନଈ ପରି ଫୁଲି ଉଠିଥିବା ଲୋକ ଗହଳିଟା ଧୀରେ ଧୀରେ କମି ଚାଲିଛି। ଚଲିଲ୍ ଚାରିପଟେ ତଥାପି ବେଢିଛନ୍ତି ଅନେକ ଲୋକ। ଜାଫର ଚିହ୍ନିଲା, ଠିଆ ହୋଇଥିବା ଲୋକମାନଙ୍କ ମଧ୍ୟରେ ଅଛନ୍ତି ଚଲିଲ୍ ଦୋକାନର ଗ୍ରାହକମାନେ। ସେମାନେ ଚଲିଲ୍ ଦୋକାନର ଗ୍ରାହକ ବୋଲି ସ୍ପଷ୍ଟ ଚିହ୍ନା ପଡୁଥିଲେ କାରଣ

ସେମାନଙ୍କ ହାତରେ ଥିଲା ଜଲିଲ୍ ଦୋକାନର ମାଂସ ପୁଡ଼ିଆ। ପଲିଥିନ୍ ଭିତରେ ଛେଳି ମାଂସ ଆଉ ପଲିଥିନ୍ ଉପରେ ଲେଖା ଅଛି ଜଲିଲ୍। ପଲିଥିନ୍ ଭିତରୁ ଖଣ୍ଡଖଣ୍ଡ ମାଂସ ସ୍ପଷ୍ଟ ଦିଶୁଛି।

ମାଂସ ପୁଡ଼ିଆ ଧରି ଠିଆ ହୋଇଥିବା ବାବୁମାନେ ଜଲିଲ ଦେହର କଂଟା ମାଂସକୁ ଦେଖୁ ଦେଖୁ ତାଙ୍କ ଆଖି ପଡ଼ିଲା ନିଜ ହାତର ପଲିଥିନ୍ ଭିତରେ ଥିବା ରକ୍ତଲଗା ଛେଳି ମାଂସ ଉପରେ। ଆଗରେ ଜଲିଲ୍ ମିଆଁର ମାଂସ, ପଲିଥିନ ପୁଡ଼ିଆରେ ଛେଳି ମାଂସ। ଉଭୟ ମାଂସ ରକ୍ତ ରଂଜିତ। ଉଭୟ ମାଂସ ଦେଖିବାକୁ ଏକାପରି। ଉଭୟ ମାଂସ ତାଜା ଆଉ ଉଭୟରୁ ମାଂସ ବାସ୍ନା।

ଡାଫର ମୁଣ୍ଡକୁ ପଶି ଆସୁଥିଲା ତା ମାଆର ଲଙ୍ଗଳା, ଖିନ୍ନଭିନ୍ନ ଦେହଟାର ଛବି ଆଉ ଅସୁରମାନଙ୍କ ବିଭତ୍ସ ବିକଟାଳ ହସ।

ମାଂସ ପୁଡ଼ିଆ ଧରି ଠିଆ ହୋଇଥିବା ବାବୁମାନେ ବାରମ୍ବାର ଚାହୁଁଥିଲେ ସେମାନେ ପଲିଥିନ୍‌ରେ ଧରିଥିବା ଛେଳିମାଂସକୁ ଆଉ ଆଗରେ ପଡ଼ିଥିବା ଜଲିଲ୍‌ର ମାଂସକୁ।

ପୋଲିସ ଗାଡ଼ି ଦୁର୍ଘଟଣା ସ୍ଥଳରେ ପହଞ୍ଚିଲା। ଜଲିଲ୍‌ର ଛିନ୍ନଛତ୍ର ଦେହକୁ ଘେରି ଠିଆ ହୋଇଥିବା ମଣିଷମାନଙ୍କ ହାତରେ ପଲିଥିନ ପୁଡ଼ିଆରେ ମାଂସ। ପୋଲିସର ଆଖି ମାଂସ ପୁଡ଼ିଆ ଉପରେ ସ୍ଥିର ହୋଇଗଲା।

ପୋଲିସ୍ ସେମାନଙ୍କୁ ଟେରା କଲେ — ପଲିଥିନ୍ ପୁଡ଼ିଆରେ କି ମାଂସ? ଆପଣମାନେ ଏତେ ସଂଖ୍ୟାରେ ମାଂସ ପୁଡ଼ିଆ ଧରି ଏଠି କାହିଁକି ଠିଆ ହୋଇଛନ୍ତି। ଦୁର୍ଘଟଣାଗ୍ରସ୍ତ ଏ ଲୋକ ଦେହରୁ ମାଂସ ଗଲା କୁଆଡେ?

ପୋଲିସ କଥାରେ ଭୟଭୀତ ହୋଇ ସେମାନେ ଛତ୍ରଭଙ୍ଗ ଦେଲେ। ପୋଲିସ୍ ସେମାନଙ୍କୁ ଗୋଡ଼େଇଲା।

ଡାଫର ସେଇଠି ଠିଆ ଠିଆ ଦେଖୁଥିଲା — ଅସୁରମାନେ ପଲିଥିନ୍ ମୁଣିରେ ମାଂସ ପୁଡ଼ିଆ ଧରି ଧାଇଁଛନ୍ତି ଖୁବ୍ ଲମ୍ବ ଲମ୍ବ ପାଦ ପକାଇ। ସେମାନଙ୍କ ପାଦ ସବୁ ତାଳ ଗଛ ପରି ଡେଙ୍ଗା ଡେଙ୍ଗା। ସେମାନଙ୍କ ମୁଣ୍ଡ ଲାଗୁଛି ମେଘ ମଥାନରେ।



# ସ୍ୱପ୍ନ ଶୋଭାଯାତ୍ରା

ବିଭାଘର ବର୍ଷକ ପରେ ବଡ଼ଝିଅ ସୀପ୍ରା ତାର ସ୍ୱାମୀ ସଂସାର, ଶାଶୂଘର ଛାଡ଼ି ବାପାଙ୍କ ପାଖକୁ ସବୁଦିନ ପାଇଁ ଫେରିବା, ଆଉ ସେଇ ଘଟଣାର ଆଠ ଦିନ ଭିତରେ ବସ ଦୁର୍ଘଟଣାରେ ସୀପ୍ରାର ବାପା ଶିଶିରଙ୍କ ମୃତ୍ୟୁ ହେବା ଘଟଣାରେ ସୁନନ୍ଦାଙ୍କର ଦମ୍ଭ ଏକଦମ ଭାଙ୍ଗି ଯାଇଥିଲା ।

ପରିବାରର କନିଷ୍ଠତମ ସଦସ୍ୟ ଶେଷାଂଶୁର କାନ୍ଧ ଉପରେ ମୁଣ୍ଡ ରଖି ସୁନନ୍ଦା ତାଙ୍କର ପାଞ୍ଚ ଝିଅଙ୍କ ମୁହଁକୁ ଚାହିଁଲେ । ସୀପ୍ରା ତଳେ ସୀମା, ସୀପା, ସୃଚୀ ଆଉ ସୁତପା । ସୀପ୍ରାକୁ ୨୯ ବର୍ଷ, ସୀମାକୁ ୨୭ ବର୍ଷ, ସୀପାକୁ ୨୬, ସୃଚୀକୁ ୨୫ ଆଉ ସବୁଠୁ ସାନ ସୁତପାକୁ ୨୪ ବର୍ଷ । କାନ୍ଧି ଧରିବା ପୂର୍ବର ହୃଷ୍ଟପୁଷ୍ଟ କଦଳୀ ବଣଟିଏ ପରି ତାଙ୍କ ଆଗ ଘେରି ଠିଆ ହୋଇଛନ୍ତି ପାଞ୍ଚ ଝିଅ ।

ଯାହାର କାନ୍ଧ ଏତେ ବଡ଼ ପରିବାରର ବୋଝ ବୋହିବା ପାଇଁ ବର୍ତ୍ତମାନ ଏକମାତ୍ର ଅବଲମ୍ବନ ସିଏ ଏଇ ଶେଷାଂଶୁ । ତାକୁ ମୋଟେ ୨୨ ବର୍ଷ । ଏଇ ପୁଅର କଅଁଳ କାନ୍ଧକୁ ଭରସା କରି ତାଙ୍କୁ ଆଉ ତାଙ୍କ ଝିଅମାନଙ୍କୁ ଅବଶିଷ୍ଟ ଦିନମାନ ବଞ୍ଚିବାକୁ ହେବ । ଜୀବନର ସମସ୍ୟା ସବୁକୁ ସାମନା କରିବାକୁ ହେବ ।

ବାପାଙ୍କ ମୃତ୍ୟୁପରେ ପରିବାର ପୁନର୍ବସତି ଯୋଜନାରେ ଶେଷାଂଶୁ ଚାକିରି ପାଇଯିବାରୁ ପରିବାରଟା କୌଣସିମତେ ଥଇଥାନ ହୋଇଗଲା । କିନ୍ତୁ ସୁନନ୍ଦା ସବୁଦିନ ପାଇଁ ଭାଙ୍ଗି ଚୂନଚୂନା ହୋଇଗଲେ । ପାଞ୍ଚଟା ଝିଅକୁ ଏକାଠି ଦେଖିବାବେଳେ ତାଙ୍କ ମଂଜ ଦୋହଲି ଯାଉଥିଲା । ଅସହାୟତା, ଅନିଶ୍ଚିତତା ପବନରେ ତାଙ୍କ ଆସ୍ଥା ଆଉ ବିଶ୍ୱାସର ଚୌହଦୀ ଦୁଲୁକି ଉଠୁଥିଲା ।

ବଡ଼ ଝିଅ ସୀପ୍ରାକୁ ବିବାହ ଦେଇ ଯେତିକି ଉଶ୍ୱାସ ହୋଇ ନ ଥିଲେ ସୁନନ୍ଦା, ତାଠୁ ବେଶୀ ଅଶ୍ୱାସନା ପାଇଥିଲେ କ୍ୱାଇଁଙ୍କ ସହାୟତାରେ ଅବଶିଷ୍ଟ ଚାରିଟି

ଆନନ୍ଦ ଚନ୍ଦ୍ର ପହି

ଝିଅଙ୍କ ବିବାହ ସଂପନ୍ନ କରିବା ଭରସାରେ। କିନ୍ତୁ ହଠାତ୍ ମୁଠାକଯାଙ୍କ ସ୍ୱପ୍ନ ମୁଠାଏ ଖଇପରି ତାଙ୍କ ହାତ ମୁଠାରୁ ଉଡ଼ିଗଲା। ସୀପ୍ରାର ସ୍ୱାମୀ ସୀପ୍ରାକୁ ବିବାହ କରିବା ପୂର୍ବରୁ ଆଉ ଗୋଟେ ଝିଅକୁ ରକ୍ଷିତା କରି ରଖିଥିବା ଓ ତା ସହିତ ଆଡ଼ଜଷ୍ଟ କରି ଚଳିବାକୁ ବାଧ୍ୟ ଆଉ ବଳାତ୍କାର କରିବାରୁ ସୀପ୍ରା ବାପାମାଆଙ୍କ ପାଖକୁ ଫେରି ଆସିବା ଘଟଣା ସୁନନ୍ଦାଙ୍କୁ ଯେତିକି ବ୍ୟସ୍ତ ବିବ୍ରତ କରିଥିଲା, ତାଠୁ ବେଶୀ ଦୁଃଖିତ କରିଥିଲା ସ୍ୱାମୀ ଶିଶିରବାବୁଙ୍କ ମୃତ୍ୟୁ। ସୁନନ୍ଦାଙ୍କୁ ଦୁଃଖ, ଜଂଜାଳ ଓ ଅନିଶ୍ଚିତତାର ଘେର ଭିତରେ ବସେଇ ଚାଲିଗଲେ ଶିଶିର।

ଶିଶିରବାବୁ ଏତେ ସବୁ ବୁଝାବୁଝି କରି ଏଇ ଭୁବନେଶ୍ୱରରେ ବିବାହ ଦେଇଥିବା ଝିଅର ଅବସ୍ଥା ଯଦି ଏମିତି ହେଲା, ସୁନନ୍ଦା ଏବେ କାହା ସାମର୍ଥ୍ୟ ଉପରେ ବିଶ୍ୱାସ ରଖି ଆଉ ଚାରିଟା ଝିଅଙ୍କର ବିବାହ ଦେବେ? କିଏ ତାଙ୍କୁ ଭରସା ଦେବ ଯେଉଁ ଝିଅମାନଙ୍କୁ ସେ ବିବାହ ଦେବେ ସେମାନଙ୍କ ଅବସ୍ଥା ବଡ଼ ଝିଅର ଅବସ୍ଥା ପରି ନହେବ ବୋଲି? ବାଇଶ ବର୍ଷର ଅନଭିଜ୍ଞ ଶେଷାଂଶୁର କଅଁଳ କାନ୍ଧରେ କ'ଣ ଏତେ ବଡ଼ ଦାୟିତ୍ୱର ବୋଝ ଲଦି ଦେଇ ସିଏ ନିଶ୍ଚିନ୍ତରେ ନିଃଶ୍ୱାସ ମାରି ପାରିବେ?

ଝିଅମାନଙ୍କୁ ଆଉ ସେମାନଙ୍କ ଅନିଶ୍ଚିତ ଭବିଷ୍ୟତକୁ ସାମ୍ନାକରିବାକୁ ସୁନନ୍ଦା ଭୟ କରୁଥିଲେ। ସୁନନ୍ଦା ନିଜର ନିପାରିଲାପଣିଆ ବିଷୟରେ ନିଶ୍ଚିତ ଥିଲେ ଯେତିକି, ଝିଅମାନଙ୍କ ଭବିଷ୍ୟତର ନିଶ୍ଚିତତା ବିଷୟରେ ଅନିଶ୍ଚିତ ଥିଲେ ସେତିକି।

ଶିଶିରବାବୁଙ୍କ ବନ୍ଧୁ ଯେଉଁମାନଙ୍କ କଥାକୁ ବିଶ୍ୱାସ କରି ସୀପ୍ରାର ବିବାହ କରାଯାଇଥିଲା, ସେମାନଙ୍କ ଉପରୁ ସବୁଦିନ ପାଇଁ ସୁନନ୍ଦାଙ୍କର ବିଶ୍ୱାସ ତୁଟି ଯାଇଥିଲା। ସୁନନ୍ଦା ଏବେ ସମସ୍ତଙ୍କୁ ସନ୍ଦେହ କରୁଛନ୍ତି, ଭୟ କରୁଛନ୍ତି। ନିଜ ଦରଜା ବାହାରେ ଚଳପ୍ରଚଳ ହେଉଥିବା ମଣିଷମାନେ ହିଂସ୍ର, ଶ୍ୱାପଦ ପରି ସୁନନ୍ଦାଙ୍କ ଆଖିକୁ ଭୟଙ୍କର ଦିଶୁଛନ୍ତି। ସୁନନ୍ଦା ନିଜ ଡେଣାର ସୁରକ୍ଷା ପାଚେରି ଦେବାଇ ନିଜ ଝିଅମାନଙ୍କୁ ସମସ୍ତଙ୍କ ଦୃଷ୍ଟିରୁ ରକ୍ଷା କରିବାକୁ ସବୁବେଳେ ସଚେତନ।

ଝିଅମାନେ ବିବାହ ବୟସ ଅତିକ୍ରମ କରିବାକୁ ବସିଲେଣି। ଉପର ଆଡୁ ଗୋଟି ଗୋଟିକି ଖସାଇ ନଦେଲେ ପ୍ରତି ମୁହୂର୍ତ୍ତରେ ଅତରା ଭୁଷୁଡ଼ି ପଡିବାର ଆଶଙ୍କା। କିନ୍ତୁ ସୁନନ୍ଦାର ଶକ୍ତି, ସାମର୍ଥ୍ୟ କାହିଁ? କିଛି ଟଙ୍କା ଶିଶିରବାବୁଙ୍କ ମୃତ୍ୟୁପରେ ତାଙ୍କ ଅଫିସ୍‌ରୁ ମିଳିଛି। କିନ୍ତୁ ଟଙ୍କା କ'ଣ ସବୁ କଥା?

ସୁନନ୍ଦା ଯଦି ଝିଅମାନଙ୍କର ବିବାହ ଦିଅନ୍ତି ତେବେ ସୀପ୍ରାର ପୁନର୍ବିବାହ କରିବେ କି ନାହିଁ? ସୀପ୍ରାର ଯଦି ପୁନର୍ବିବାହ ନ କରାନ୍ତି ତେବେ ତାର ଭବିଷ୍ୟତ କ'ଣ ହେବ?

ଆନନ୍ଦ ଚନ୍ଦ୍ର ପତି

ଏବେ ଯଦି ସୀପ୍ରାର ପୁନର୍ବିବାହ କରିବେ ତେବେ ଅବଶିଷ୍ଟ ଚାରିଟା ଝିଅଙ୍କର ବିବାହ କେବେ କରିବେ ? ଏମାନଙ୍କ ବିବାହ ପାଇଁ କେତେ ଟଙ୍କା ଖର୍ଚ୍ଚ ହେବ ? ଚାରିଟା ଝିଅ ପାଇଁ ଛଅ, ସାତ କି ଆଠ ଲକ୍ଷ ଟଙ୍କାରୁ ଊଣା ଖର୍ଚ୍ଚ ହେବ ନାହିଁ।

ଏମିତି ଅନେକ ପ୍ରଶ୍ନରେ ଜର୍ଜ୍ଜରିତା ସୁନନ୍ଦା ଝିଅମାନଙ୍କ ବିବାହ ପ୍ରସଙ୍ଗ ଉଠିଲେ ଖୁବ୍ ଭୟ ପାଇ ଯାଉଥିଲେ।

ଗୋଟିଏ ତୃତୀୟଶ୍ରେଣୀ କର୍ମଚାରୀର ଛୋଟ ସରକାରୀ ବାସଭବନର ସଂକୀର୍ଣ୍ଣ ଗଣ୍ଡି ଭିତରେ ପ୍ରତି ରାତିରେ ଦେହକୁ ଦେହ ଯୋଡ଼ି ଶୋଇଥିବା ପାଞ୍ଚଟା ଝିଅର ଦେହର ଦାହ ଉହକିଯାଏ ଦେହରୁ ଦେହକୁ, ଦେହରୁ ମନକୁ, ଆଉ ମନରୁ ପବନକୁ। ପବନରୁ ସପନ ହୋଇ ଫେରିଆସେ ସେମାନଙ୍କ ଅଳସ ଆଖିକୁ। ପାଞ୍ଚ ଝିଅ ଡେଙ୍ଗା ଡେଙ୍ଗା ସ୍ୱପ୍ନମାନଙ୍କର ସାମନା କରନ୍ତି ଶୋଇ ଶୋଇ। ଅନିନ୍ଦ୍ୟ ସୁନ୍ଦର ଅମିତ ଶକ୍ତିଧର ରାଜକୁମାରର ହାତଧରି ପକ୍ଷୀରାଜ ଘୋଡାରେ ଚଢ଼ି ସାତ ସମୁଦ୍ର ତେର ନଈ ପାର ହୋଇ ମଣି ମାଣିକ୍ୟ ଘେରା ଲବଙ୍ଗ ଦ୍ୱୀପରେ ଓହ୍ଲାନ୍ତି ପ୍ରତି ରାତିରେ। ଦେହକୁ ଦେହ ଯୋଡି ଶୋଇଥିବା ପାଞ୍ଚଟି ଝିଅ ସ୍ୱପ୍ନ ଭିତରେ ବୁଡ଼ିବା ବେଳେ କେହି କାହାର ସାମନା କରନ୍ତି ନାହିଁ କେବେ।

ରାତିରେ ନିଦ ଆଉ ସପନରେ ବୁଡ଼ି ରହୁଥିବା ପାଞ୍ଚଟା ଝିଅଙ୍କ ପାଇଁ ଦିନଟା ଥିଲା ଅତି ଭୟଙ୍କର। ବାହାରକୁ ପାଦ କାଢିଲେ କି କାହା ସହିତ କଥା କହିଲେ ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଜଗନ୍ତି। ତେବେ କେଉଁଠି ଠିଆ ହୋଇଥିବାର ଦେଖିଲେ ସୁନନ୍ଦା ଚିତ୍କାର କରନ୍ତି।

ସୀମା ଚାହିଁଥିଲା ରତ୍ନ ଅଳଙ୍କାର ଦୋକାନରେ ସେଲସ୍‌ମ୍ୟାନ ଚାକିରି କରିବାକୁ। ଲୁଚିଛପି ଇଣ୍ଟରଭିଉ ଦେଇ ନିଯୁକ୍ତିପତ୍ର ବି ପାଇଥିଲା। କିନ୍ତୁ ସୁନନ୍ଦା ସେ ନିଯୁକ୍ତି ପତ୍ରକୁ ଚିକିଚିକି କରି ଚିରି ପାଦରେ ମକଚି ଦେଇଥିଲେ। ସୀମାକୁ ଶୁଣାଇ ଦେଇଥିଲେ — "ଦୋକାନୀ ସୁନ୍ଦରୀ ଝିଅମାନଙ୍କୁ ସେଲସ୍‌ମ୍ୟାନ ରଖି ତା ଦୋକାନର ଜିନିଷ ବିକ୍ରି କରାଏ ନା ସେଲସ୍‌ମ୍ୟାନ ଥିବା ଝିଅଟିର ସୌନ୍ଦର୍ଯ୍ୟ ବିକ୍ରି କରେ ? ଏମିତି ଗୋଟେ ଚାକିରି ପାଇଁ ଇଣ୍ଟରଭିଉ ଦେବା ପୂର୍ବରୁ ମୋର ଅନୁମତି ନେବା ତୋର ଉଚିତ ଥିଲା। ତୋ ବାପା ନାହାଁନ୍ତି ବୋଲି ଏମିତି ଖୋଲା ବଜାରରେ ସୌନ୍ଦର୍ଯ୍ୟ ବିକ୍ରି କରିବାର ଅନୁମତି ମୁଁ ତତେ ଦେଇପାରିବି ନାହିଁ।"

ଘର ଆଗରେ ଟାଇପ୍ ସର୍ଟହ୍ୟାଣ୍ଡ ଇନ୍‌ଷ୍ଟିଚ୍ୟୁଟ। ଘରେ ବସି ବସି ବିରକ୍ତ ଲାଗୁଛି। ସୀପା ଚାହୁଥିଲା ସେଠି ଟାଇପ୍, ସର୍ଟହ୍ୟାଣ୍ଡ୍ ଶିଖିବ। ସୁନନ୍ଦା ମନାକଲେ — ସେ ସବୁ ଶିଖିବା କିଛି ଦରକାର ନାହିଁ। ଝିଅ ପିଲାମାନଙ୍କ ପାଇଁ ଟାଇପିଷ୍ଟ କିମ୍ବା

ଷ୍ଟେନୋ ଚାକିରି ସେମିତି କିଛି ମର୍ଯ୍ୟାଦା ସଂପନ୍ନ ଚାକିରି ନୁହଁ।

ସୃଚୀର କଣ୍ଠ ଅଛି। କଲେଜ ଫଙ୍କସନ୍‌ରେ ସିଏ ଅନେକଥର ଗୀତ ପାଇଁ ପୁରସ୍କାର ପାଇଛି। ଗୀତ ଶିଖିବା ପାଇଁ ଆଗ୍ରହ ତାର ଅନେକ ଦିନର। ଘରଠୁ ପାଞ୍ଚ କିଲୋମିଟର ଦୂରରେ ସଙ୍ଗୀତ ଶିକ୍ଷାକେନ୍ଦ୍ର। ସେଠି ସଙ୍ଗୀତ ଶିକ୍ଷା କରିବା ପାଇଁ ମଧ୍ୟ ସୃଚୀକୁ ଅନୁମତି ଦେଲେ ନାହିଁ ସୁନନ୍ଦା।

ସୁତପା ଓଡ଼ିଶୀ ନାଚ ଶିଖିବାକୁ ଯିଦ୍ ଧରିଲା। ଓଡ଼ିଶୀ ନାଚି ତା ସାଙ୍ଗ ମୋନାଲିସା ଟେଲିଭିଜନରେ ପ୍ରୋଗ୍ରାମ ପାଇଲାଣି।

କିନ୍ତୁ ସୁନନ୍ଦାଙ୍କର ଗୋଟିଏ କଥା—ସିଏ କାହାରିକୁ ଘରୁ ପଦାକୁ ଛାଡ଼ିବେ ନାହିଁ। ଯିଏ ଯାହା କରିବ ଘରେ କରୁ।

ଝିଅ ବାହାଘର ପ୍ରସ୍ତାବ ଆସିବା ମାତ୍ରେ ସୁନନ୍ଦା ଅତ୍ୟଧିକ ଭୟଭୀତ ଦିଶନ୍ତି। କିଛି ସମୟ ପାଇଁ କିଛି ନ କହି ଚୁପ୍ ରହନ୍ତି। ଝିଅମାନଙ୍କୁ ଜାବୁଡ଼ି ଧରି କାନ୍ଦନ୍ତି। କାନ୍ଦି କାନ୍ଦି ନିଦ ଯାଆନ୍ତି। ନିଦରୁ ଉଠିବା ପରେ ସବୁ ସ୍ୱାଭାବିକ। ଯେପରି କିଛି ଘଟି ନାହିଁ।

ଏମିତି ତିନି ଚାରୋଟି ପ୍ରସ୍ତାବରେ ସୁନନ୍ଦାଙ୍କର ଆଚରଣ କାନ୍ଦ, ଭୟ, ନିଦ ଯୋଗୁଁ ତାଙ୍କ ଘରକୁ ଆଉ ବିବାହ ପ୍ରସ୍ତାବ ଆସିଲା ନାହିଁ। ବିବାହ ପ୍ରସ୍ତାବ ଆସିଲେ ଭୟ ପାଉଥିବା ସୁନନ୍ଦା ଅନ୍ୟ କାହାକୁ କହି ଝିଅମାନଙ୍କ ପାଇଁ ଆଉ ପ୍ରସ୍ତାବ ସଂଗ୍ରହ କରିବା ସମ୍ଭବ ହେଲା ନାହିଁ। ଶାଶୂଘର ଛାଡି ଆସିଥିବା ଝିଅ ସୀପ୍ରାର ପୁନର୍ବିବାହ ଆଶା ଆଉ ସୁନନ୍ଦାଙ୍କର ନାହିଁ। ସୀପ୍ରାକୁ ଯା ଭିତରେ ୩୨ ବର୍ଷ ଡେଇଁଲାଣି। ସୀମାକୁ ତିରିଶ ଛୁଇଁଲାଣି।

ଶେଷାଂଶୁକୁ ୨୫ ବର୍ଷ ହେଲାଣି। ଉପରେ ଥିବା ବଡ ଭଉଣୀମାନଙ୍କର ବିଭାଘର ସରିଲେ ସିଏ ବାହାହେବ। ବାପାଙ୍କ ମୃତ୍ୟୁ ଆଜିକୁ ତିନିବର୍ଷ। ବାହାଘର କରିଥିଲେ ଅତି କମ୍‌ରେ ଦୁଇଟି ଭଉଣୀର ବିଭାଘର ସିଏ ସାରିଥାନ୍ତା ଏଇ ତିନିବର୍ଷ ଭିତରେ। କିନ୍ତୁ ଯିଏ ବାହାଘର କରିବା କଥା, ଝିଅମାନଙ୍କ ବିବାହ ଚିନ୍ତା ଯାହାକୁ ବେଶୀ ବ୍ୟତିବ୍ୟସ୍ତ କରିବା କଥା, ସିଏ ଯଦି ଏମିତି ଆଚରଣ କରନ୍ତି ତାହେଲେ ବିଭାଘର କରିବ କିଏ ? ହେବ କେମିତି ?

ଏମିତି ପାଞ୍ଚ ପାଞ୍ଚଟା ଝିଅଙ୍କ ତଳେ ଯେଉଁ ବାପାମାଆ ଗୋଟିଏ ପୁଅ ଛାଡି କୃତାର୍ଥ ହୁଅନ୍ତି ସେମାନେ ହୁଏତ ସେଇ ଭାଗ୍ୟହୀନ ପୁଅଟିର ଦୁର୍ଦ୍ଦଶା ଦେଖିବାକୁ ଆଉ ସ୍ୱଦେହରେ ନଥାନ୍ତି। ପାଞ୍ଚ ପାଞ୍ଚଟା ଝିଅଙ୍କ ବିବାହ, ଓଷାବାର, ବନ୍ଧୁବାନ୍ଧବ, ହାନିଲାଭ ବୁଝିବା ପାଇଁ ସେ ପୁଅଟି କିପରି ନିଜ ରକ୍ତକୁ ପାଣି କରିଦିଏ, ସେକଥା ତା ବ୍ୟତୀତ ଆଉ କେହି ଜାଣିପାରନ୍ତି ନାହିଁ।

ଆନନ୍ଦ ଚନ୍ଦ୍ର ପତି

ଆଉ ଚାରିଟା ଭଉଣୀ ସିଏ ବିଭାଘର କରି ପାରିବା ପରି ତାର ସାମର୍ଥ୍ୟ ଉପରେ ତାର ଢେର ସନ୍ଦେହ। ଯାହା ବା ସିଏ କରନ୍ତା ମାଆଙ୍କର ଏମିତି ଆଚରଣ ସମସ୍ତଙ୍କୁ ସ୍ତମ୍ଭିଭୂତ କରୁଛି। ଭଉଣୀମାନଙ୍କର ବିଭାଘର ନ କରି ପାରିଲେ ତାର ଭବିଷ୍ୟତ କ'ଣ ହେବ? ପାଞ୍ଚ, ପାଞ୍ଚଟା ଭଉଣୀଙ୍କୁ ଘରେ ବୁଢ଼ୀ କରି ସିଏ କେମିତି କ'ଣ କରିବ? ବଡ଼ ଭଉଣୀମାନେ ଅବିବାହିତ ଥାଉ ଥାଉ କ'ଣ ସିଏ ବିବାହ କରିପାରିବ? ସିଏ ଯଦି ବିବାହ ନ କରେ ଗୋଟେ ପରିବାରର ବ୍ୟାପ୍ତି ଏଇଠି ସମାପ୍ତ ହୋଇଯିବ।

ଶେଷାଂଶୁ ଦିନେ ସୁନନ୍ଦାଙ୍କୁ ପଚାରିଲା—ଆଚ୍ଛା ମାଆ! ତୁ ଯେମିତି ତୋ ଝିଅମାନଙ୍କର ମାଆ, ମୁଁ ସେମିତି ସେମାନଙ୍କଠୁ ସାନ ହେଲେ ବି ସେମାନଙ୍କର ଭାଇ। ସେମାନଙ୍କୁ ବିବାହ ଦେବା ତୋର ଯେମିତି କର୍ତ୍ତବ୍ୟ ମୋର ବି ସେମିତି କର୍ତ୍ତବ୍ୟ। ସେମାନଙ୍କ ବିବାହ ନ କରାଇ, ଘରେ ସେମାନଙ୍କୁ ରଖି ବୁଢ଼ୀ କରିବାଟା ତତେ କେମିତି ସୁଖ ଲାଗୁଛି, ମୁଁ ଜାଣିନାହିଁ। ତୁ ଘରେ ଅଛୁ। ତତେ ହୁଏତ କେହି କିଛି କହୁ ନ ଥିବେ। କିନ୍ତୁ ମତେ ସମସ୍ତେ ସେଇ ଗୋଟିଏ କଥା କହୁଛନ୍ତି— କିରେ, ଚାରି ଚାରିଟା ଅଭିଆଡ଼ୀ ଭଉଣୀ ଘରେ ରଖିଛୁ ସେମାନଙ୍କ ବିଭାଘର କରୁନୁ? ସେମାନଙ୍କୁ କ'ଣ ସବୁଦିନେ ଏମିତି ଘରେ ରଖିବୁ?

ଏତେ ଲୋକଙ୍କୁ ମୁଁ କି ଜବାବ ଦେବି? କ'ଣ କହି ସେମାନଙ୍କୁ ସନ୍ତୁଷ୍ଟ କରିବି??

ସୁନନ୍ଦା ଗର୍ଜି ଉଠିଲେ—ତୁ ଏ ଘରେ କେବେଠୁ ମୁରବୀ ହେଲୁଣି? ମୁଁ ଥିବା ପର୍ଯ୍ୟନ୍ତ ତୁ ଏ ବିଷୟରେ ମୁଣ୍ଡ ଖେଳେଇବା ଦରକାର ନାହିଁ। ଯିଏ ଯାହା କହିବାର ଅଛି ମତେ କହୁ।

ଶେଷାଂଶୁ ଟିକେ ନରମି ଯାଇ କହିଲା—ଅନ୍ୟମାନଙ୍କୁ ସିନା ମୁଁ କିଛି ଜବାବ ଦେବି ନାହିଁ, ମୋ ନିଜ ଭିତରୁ ଯେଉଁ ପ୍ରଶ୍ନ ଉଠୁଚି, ତାର ଜବାବ କିଏ ଦେବ? ତୋ ଝିଅମାନେ ଆଜି ତତେ ଡ଼ରିକି କିଛି କହୁ ନାହାଁନ୍ତି। କିନ୍ତୁ ନିଜ ନିଜ ଭିତରେ ସେମାନେ ଅସନ୍ତୋଷରେ ଚକ୍‌ମକ୍ ହୋଇ ଫୁଟୁଚନ୍ତି। ଦିନ ଆସିବ ସେମାନେ ବି ତୋତେ ପ୍ରଶ୍ନ ପଚାରିବେ। ଚାରି ଚାରିଟା ଜୀବନକୁ ଗୋଟିଏ ଖୁଣ୍ଟରେ ଏକାଠି ବାନ୍ଧି ନଷ୍ଟ କରିବାର ଅଧିକାର କାହାରି ନାହିଁ।

—ମୁଁ ବଞ୍ଚିଥିବାଯାଏ ତୁ ଏ କଥା ନେଇ ମୁଣ୍ଡଖେଳେଇବା ଉଚିତ ନୁହେଁ।

—ତୁ କ'ଣ ତୋ ଝିଅମାନଙ୍କ କଥା ବୁଝିବାକୁ ସବୁଦିନ ବଞ୍ଚି ଥିବୁ?

ସୁନନ୍ଦାଙ୍କ ମୁହଁ ଲାଲ ଦିଶିଲା। ନିଃଶ୍ୱାସ ପ୍ରଖର ହେଲା। ଝଡ ପୂର୍ବର ଆକାଶ ପରି ସୁନନ୍ଦା ବିବର୍ଣ୍ଣ ଦିଶିଲେ ଓ ହଠାତ୍ କାନ୍ଦି ପକାଇଲେ। ବଡ଼ଝିଅର

ବିଭାଘର ତାଙ୍କୁ ଭୟଭୀତ କରିଛି। ସିଏ ବଞ୍ଚି ଥାଉ ଥାଉ ଏମିତି ଦୁର୍ଦ୍ଦଶା ନିଆଁ ଭିତରକୁ ଝିଅମାନଙ୍କୁ ଠେଲି ଦେଇ ପାରିବେ ନାହିଁ।

ସୁନନ୍ଦା କାନ୍ଦୁଥିଲେ। ମହମବତୀ ପରି ନିଜକୁ ନିଗାଢ଼ି ନିଗାଢ଼ି କାନ୍ଦୁଥିଲେ।

ଶେଷାଂଶୁ ମାଆକୁ ବୁଝାଉଥିଲା — ସେମାନଙ୍କ ଭବିଷ୍ୟତ ପାଇଁ ତୁ ଏମିତି ଆତଙ୍କିତ ହେବା ଠିକ୍ ନୁହଁ। ବରଂ ସେମାନଙ୍କୁ ଗୋଟିଏ ଖୁଣ୍ଟରେ ବାନ୍ଧି ରଖିଲେ ସମସ୍ତଙ୍କ ଭବିଷ୍ୟତ ଜଳିଯିବ। ସେମାନଙ୍କୁ ଜଣ ଜଣକି ପିଟାଇ ଦେ। ତାଙ୍କ ଭାଗ୍ୟ ସେମାନେ ନିଜେ ପରୀକ୍ଷା କରନ୍ତୁ। ଅବଶ୍ୟ ବହୁତ ଡେରି ହୋଇଗଲା। ମୁଁ ସୀମା ଦିଦି ପାଇଁ ଗୋଟିଏ ବର ଠିକ୍ କରିଛି। ସିଏ ଆସନ୍ତା ସୋମବାର ଦିନ ଦେଖିବାକୁ ଆସିବେ।

ସୀମାକୁ ଦେଖିବାକୁ ଆସୁଥିବା ପିଲାଟି କ'ଣ କରେ, ତାଙ୍କ ଘରେ ଆଉ କିଏ ସବୁ ଅଛନ୍ତି, ପିଲାଟିର ବୟସ କେତେ, ଯୋଗ୍ୟତା କ'ଣ — ଏସବୁ କିଛି ପଚାରିଲେ ନାହିଁ ସୁନନ୍ଦା। କେବଳ ନୀରବ ସମ୍ମତି ଜଣାଇ ଆଖିରୁ ଲୁହ ପୋଛିଲେ। ସେ ଲୁହ ଆନନ୍ଦର କି ପଶ୍ଚାତାପର କି ଦୁଃଖର କିଛି ବୁଝି ହେଲା ନାହିଁ।

ଶେଷାଂଶୁ କିନ୍ତୁ ବରଟିର ବର୍ଣ୍ଣନା ଦେଲା। ଟିକେ ବଡ଼ ପାଟିରେ କହିଲା, ଯେପରି ତା' କଥା ଏ ଘରେ ଥିବା ମାଆକୁ ଶୁଭିବ ଆଉ ଆର ଘରେ ଥିବା ତାର ଚାରି ଅପାଙ୍କୁ ଶୁଭିବ।

—"ବରଟିର ଶିକ୍ଷାଗତ ଯୋଗ୍ୟତା ବି.ଏ.। ବ୍ୟାଙ୍କ ଚାକିରି। ଘରେ କେବଳ ମାଆ। ଚାରୋଟି ଭଉଣୀ ଥିଲେ ସମସ୍ତଙ୍କର ବିବାହ ସରିଛି। ସେଇ ଭଉଣୀମାନଙ୍କ ବିଭାଘର ସାରିବା ପାଇଁ ତାଙ୍କୁ ୩୩ ବର୍ଷ ବୟସ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଲା। ମୁଁ ତାଙ୍କୁ ଆମ ଘରର ସମସ୍ତ ଅସୁବିଧା କଥା କହିଛି। ସିଏ ସବୁ ଜାଣି ଆମ ଘରେ ବିବାହ କରିବା ପାଇଁ ଆଗ୍ରହୀ ଅଛନ୍ତି। ମୁଁ ଭାବୁଛି ତାଙ୍କ ନିଜର ଚାରି ଚାରିଟା ଭଉଣୀ ବୋଝ ସିଏ ନିଜ କାନ୍ଧରେ ଉଠାଇଥିବାରୁ ଆମ ଅବସ୍ଥା ବୁଝିବେ।"

ସୁନନ୍ଦା କିଛି ନ କହି ଖଟ ଉପରେ ମୁହଁ ମାଡ଼ି ଭିତରେ ଭିତରେ କାନ୍ଦୁଥିଲେ। ନିଜ ଭିତରେ ଥିବା ଭୟ କବଳରୁ ନିଜକୁ ମୁକୁଳାଉ ଥିଲେ। ଝିଅମାନଙ୍କୁ ବିବାହ ଦେବା କଥାଟାକୁ ଗ୍ରହଣ କରିନେବାକୁ ନିଜକୁ ପ୍ରସ୍ତୁତ କରୁଥିଲେ। ତାଙ୍କ ଚାରି ପାଖରେ ଝିଅମାନେ ଠିଆ ହୋଇ ତାଙ୍କୁ ଲୁହ ଡବଡବ ଆଖିରେ ଚାହିଁଥିଲେ।

ସୁନନ୍ଦା ମୁହଁ ଉଠାଇ ଝିଅମାନଙ୍କୁ ଚାହିଁଲେ। ସେମାନଙ୍କ ଲୁହଭରି ଆଖି ଭିତରେ ପହଁରୁଥିଲା ସେମାନଙ୍କ ସ୍ୱପ୍ନ। ସୁନନ୍ଦା ନିଜ ଆଖିରୁ ଲୁହ ପୋଛିଲେ। ନିଜ ମୁହଁରେ ହସର ମୁଦ୍ରା ଫୁଟାଇବା ପାଇଁ ଚେଷ୍ଟା କଲେ।

ଆନନ୍ଦ ଚନ୍ଦ୍ର ପତି

ଆଜି ସୋମବାର। ସଂଗ୍ରାମ ଆଉ ତାର ସାଙ୍ଗମାନେ ସୀମାକୁ ଦେଖିବାକୁ ଆସିବେ। ସୁନନ୍ଦା ସକାଳୁ ସକାଳୁ ମନ୍ଦିର ଗଲେ। ଶେଷାଂଶୁ ଡ୍ରଇଁରୁମଟାକୁ ସୁନ୍ଦର କରି ସଜାଇଲା।

ନିଜକୁ ସଜାଇବା ପାଇଁ ସୀମା ନିଜକୁ ଦର୍ପଣ ଆଗରେ ଠିଆ କଲା। ସୁନ୍ଦର ମୁହଁର ଜ୍ୟୋତି ମଉଳି ଗଲାଣି। ଅସ୍ପଷ୍ଟ ହେଲେ ବି କେତେଟା ଗାର ମୁହଁର ଏଠି ସେଠି ପଡିଯାଇଛି। କ୍ରିମ୍ ଆଉ ପାଉଡର ପ୍ରଲେପ ସେ ଦାଗକୁ ସଂପୂର୍ଣ୍ଣ ଲିଭାଇବାକୁ ସମର୍ଥ ହେଉ ନାହିଁ। ଆଖି ତଳଟା କଳା ପଡିଗଲାଣି। ମୁଣ୍ଡର ବାଳ ଆଗପରି ଆଉ ଘଞ୍ଚ ନାହିଁ। ତିରିଶଟି ବସନ୍ତ ତାକୁ ଦେଇଚି ଯେତିକି ତାଠୁ ଛଡାଇ ନେଇଛି ତାଠୁ ବେଶୀ।

ଘର ଆଗରେ କାରଟାଏ ରହିବା ଶବ୍ଦରେ ସୀମା ଚମକି ପଡିଲା। ତା ଦେହ ଆଉ ମନ ଉଭୟ ରୋମାଞ୍ଚିତ ହେଲା। ତିନିଜଣ କିଏ ଗାଡ଼ିରୁ ଓହ୍ଲାଇଲେ। ତାକୁ ଦେଖିବାକୁ ଆସୁଥିବା ସଂଗ୍ରାମ ଆଉ ତାର ସାଙ୍ଗମାନେ ହେବେ ବୋଧହୁଏ। ଏମାନଙ୍କ ଭିତରୁ ନିର୍ଦ୍ଦିଷ୍ଟ ଭାବେ ସଂଗ୍ରାମ କିଏ ଚିହ୍ନି ନ ହେଲେ ବି ତିନିଜଣ ଯାକ ସମସ୍ତେ ସୁନ୍ଦର। ସୀମା ଆଉ ଥରେ ରୋମାଞ୍ଚିତ ହେଲା।

ସୀପା, ସୁଚୀ ଆଉ ସୁତପା କବାଟ ଖୋଲି ପଶି ଆସିଲେ। ସେମାନେ ସମସ୍ତେ ନିଜକୁ ସଜେଇଛନ୍ତି। ସୀମାର ମନେ ହେଲା ସତେ ଯେମିତି ସେମାନେ ସୀମା ସହିତ ସୌନ୍ଦର୍ଯ୍ୟ ପ୍ରତିଯୋଗିତା ପାଇଁ ନିଜକୁ ଆକର୍ଷଣୀୟ ଭାବେ ସଜାଇଛନ୍ତି।

ସବୁଠୁ ସାନ ସୁତପା ଉପରେ ସୀମା ବେଶୀ ରାଗିଲା। ସୁତପା ତାଠାରୁ ଢେର ସାନ। ସିଏ ବିନା ମେକଅପ୍‌ରେ ଠିଆ ହେଲେ ବି ତା ବୟସର ଜ୍ୟୋତିରେ ସିଏ ଝଲସି ଉଠିବ। ସୁତପା ଏତେ ମେକ୍‌ଅପ୍ ନେବାର କ'ଣ ଥିଲା? ମାଆଙ୍କର ସବୁଠୁ ଦାମୀ ଶାଢ଼ିଟା ସିଏ ପିନ୍ଧି ସାରିଲାଣି। ସିଏ ଆଉ କୋଉ ଶାଢ଼ିଟା ପିନ୍ଧିବ?

ତାକୁ ଦେଖିବାକୁ ଆସୁଛନ୍ତି। ଅନ୍ୟମାନେ ନିଜକୁ ଏମିତି ସଜେଇ ହେବାର ଉଦ୍ଦେଶ୍ୟ କ'ଣ? ସୀମା ମନେ ମନେ ବିରକ୍ତ ହେଉଥିଲେ ବି ମୁହଁ ଖୋଲି କାହାରିକୁ କିଛି କହି ପାରିଲା ନାହିଁ।

ସୀପା ଆଉ ସୁଚୀଙ୍କୁ ଚାହିଁଲା ସୀମା। ସେ ଦୁହେଁ ମଧ ତାଠାରୁ ଅଧିକ ଉଜ୍ଜ୍ୱଳ ଦିଶୁଛନ୍ତି। ସୀପା ଆଉ ସୁଚୀ ଦୁହେଁ ସୀପ୍ରା ଅପାର ଭଲ ଶାଢ଼ି ଦୁଇଟା ପିନ୍ଧି ଠିଆ ହୋଇଛନ୍ତି।

ସିଏ ପିନ୍ଧିବା ପାଇଁ ଆଉ ଭଲ ଶାଢି କାହିଁ?

ମାଆଟା କେମିତିଆ କେଜାଣି? ସିଏ ସିନା ଏସବୁ କଥା ବୁଝନ୍ତା! ଏ

ସାନ ଭଉଣୀଗୁଡାକ ବି ସେମିତି। ଭାରି ଫୁଲେଇ। ଯାହାକୁ ଦେଖିବାକୁ ଆସିଛନ୍ତି ତା ପାଇଁ କିଛି ନ ରଖି ଆଗଡୁରା ସବୁ ଲଗେଇ, ପିନ୍ଧି ଚେହେରା ଦେଖେଇବାକୁ ସଜେଇସାଜେଇ ହେଇ ଯାଉଛନ୍ତି। ନିଜେ ଏମିତି ସଜେଇ ହେବାର ଅର୍ଥ କ'ଣ? ଏମିତି ଗୋଟେ ଦିନରେ ସୀପ୍ରା ଅପା କଟକ ନ ଯାଇଥିଲେ ହୋଇ ନ ଥାନ୍ତା? ସିଏ ଯୋଉ ଶାଢିଟା ପିନ୍ଧିକି ପଳେଇଚି ସେଇଟା ଥିଲେ ବି ସୀମା ପିନ୍ଧି ପାରିଥାଆନ୍ତା। କଟକ ଯିବା ପାଇଁ ତାର ଏତେ ଦାମିକା ଶାଢିଟେ କ'ଣ ଦର୍କାର ଥିଲାଯେ?

ସୀମା ମୁହଁ ମେକ୍‌ଅପ୍ କରିବାରେ ଅବଶ୍ୟ ଟିକେ ଅଧିକ ସମୟ ଲାଗିଲା। ୩୦ ବର୍ଷ ଝିଅର ମୁହଁଟାକୁ ୨୩ ବର୍ଷିୟା କରିବା ପାଇଁ ଅଧିକ ସମୟ ଲାଗିବା ସ୍ୱଭାବିକ। ମୁହଁକୁ ସଜାଇବା ବେଳେ ସୀମା ନିଜ ଦେହ କଥାଟା ସଂପୂର୍ଣ୍ଣ ଭୁଲି ଯାଇଥିଲା। ସେଇ ସୁଯୋଗରେ ଏମାନେ ସବୁ ଭଲ ଭଲ ଶାଢି ପିନ୍ଧି ପକାଇଛନ୍ତି।

ସୀମାର ଇଚ୍ଛା ହେଉଥିଲା ସାନ ଭଉଣୀମାନଙ୍କୁ ମନ ଇଚ୍ଛା ଗାଳି ଦେବାକୁ। କ'ଣ ପାଇଁ ସେମାନଙ୍କର ଏ ଅଗ ସଜା? ନିଜ ଭଉଣୀ ସହିତ ପ୍ରତିଯୋଗିତା କରିବାକୁ?

ଶେଷାଂଶୁ ଆସି ତାଗିଦ୍ କଲା—ଅପା! ତୁ ଏଯାଏ ଶାଢ଼ି ପିନ୍ଧୁନାହୁଁ? ସେମାନେ ଅନେକ ବେଳୁ ଆସିଲେଣି। ଆଉ ଅଧିକ ଡେରି କରିବା ଠିକ୍ ହେବ ନାହିଁ।

ଶେଷାଂଶୁ ତାଗିଦ୍ କରି ଯିବା ପରେ ମଧ ସୀମା ଶାଢି ପିନ୍ଧିବାକୁ ତତ୍ପର ହେଲା ନାହିଁ। ସିଏ ଜାଣେ ଆଉ ଭଲ ଶାଢି ନାହିଁ।

ସୀପା, ସୃଚୀ ଆଉ ସୀତପା ଗୋଟି ଗୋଟି ହୋଇ ବିଭିନ୍ନ ବାହାନାରେ ସେ ଘରୁ ବାହାରିଗଲେ। ସୀମା ଠିଆ ହୋଇ ସେମାନଙ୍କ ବାହାନାକୁ ଲକ୍ଷ୍ୟ କରିଥିଲା। ସୁନନ୍ଦା ଆସିଲେ। ସୀମାକୁ ଚାହିଁଲେ। ତାଙ୍କ ମୁହଁ ଥମ୍, ଥମ୍ ଦିଶିଲା। କିଛି କହିବେ କହିବେ ହୋଇ ସିଏ ଅଟକି ଗଲେ।

ଶେଷାଂଶୁ ପୁଣି ଥରେ ପଶି ଆସିଲା— ଅପା! ତୁ ଏଯାଏ ସେମିତି ଠିଆ ହେଇଚୁ? ଯା, ଶାଢିଟା ପିନ୍ଧିପକା। ଏତେ ପାଠ ପଢି ଏମିତି ଲାଜ କରୁଚୁ କ'ଣ? ମାଆ! ତୁ ଏମିତି ଠିଆ ହେଲେ ଚଳିବ? ଦେ, ଅପାକୁ ଶାଢିଟେ ପିନ୍ଧେଇ ଦେ। ସୀପା ଅପା, ସୃଚୀ ଅପା ଆଉ ସୁତପା ଅପା କୁଆଡେ ଗଲେ? ଦିଅ, ଶୀଘ୍ର କାମ ସାର। ସେମାନେ ଯିବାକୁ ତରବର ହେଲେଣି।

ତଥାପି କିଛି ନ କହି ସୀମା ଚୁପ୍ ରହିଲା। ଶେଷାଂଶୁ ବିରକ୍ତ ହୋଇ ଫେରିଗଲା ଦାଣ୍ଡ ଘରକୁ। ସୁନନ୍ଦା ମଧ ଆର ଘରକୁ ଉଠିଗଲେ। ସେ ଘରର କବାଟ ଭିତରୁ ଆଉଜା ହୋଇଥିଲା। ସୁନନ୍ଦା କବାଟରେ ନକ୍ କରିବା ପୂର୍ବରୁ

କବାଟ ଫାଙ୍କରେ ଦେଖିଲେ ସୂଚୀ ଆଉ ସୁତପା ଗୋଟିଏ ଦର୍ପଣକୁ ଛଡ଼ାଛଡି ହୋଇ ନିଜ ନିଜର ମୁହଁ ଦେଖୁଛନ୍ତି। ସୀପା ଛୋଟ ଛୋଟ ତିନିଖଣ୍ଡ କାଗଜରେ କ'ଣ ଲେଖି ଭାଙ୍ଗୁଛି। ସୁନନ୍ଦା ଘର ଭିତରକୁ ନ ପଶି ସେଇଠି ଠିଆ ହେଲେ। ସୀପା ତିନିଖଣ୍ଡ କାଗଜକୁ ସୁତପା ହାତକୁ ବଢ଼ାଇ ଦେଇ କହିଲା—ନେ, ତୁ ସବୁଠୁ ସାନ। ସାନ ହାତରେ ଲଟେରୀ ଉଠାଯିବା କଥା। ତୁ ଆଖି ବୁଜି ଏଥିରୁ ଗୋଟେ ଉଠା। ଯାହା ନାଆଁ ଉଠିବ ସିଏ ସୀମା ଆପା ସାଙ୍ଗରେ ପାନ, ସିଗାରେଟ, ଟ୍ରେ ଧରି ସଂଗ୍ରାମବାବୁଙ୍କ ପାଖକୁ ଯିବ।

ସୁତପା ମନା କଲା—ମୁଁ ଏ ଲଟେରୀ ଫଟେରୀରେ ବିଶ୍ୱାସ କରେ ନାହିଁ। ମାଆ ଯାହାକୁ କହିବ ସିଏ ଯିବ।

ସୀପା କହିଲା-ତୁ ଭାରି ଚାଲାକ୍– ତୁ ଭାବିଚୁ ତୁ ସବୁଠୁ ସାନ ବୋଲି ମାଆ ତୋ ନାଆଁ କହିବ? ନା, ତୁ ଯିବା ପ୍ରଶ୍ନ ଉଠୁ ନାହିଁ। ତୁ ଗଲେନା, ସୀମା ଅପାର ମୋଟେ ଚାନ୍ସ ନାହିଁ। ତତେ ହିଁ ସଂଗ୍ରାମବାବୁ ସିଲେକ୍ଟ କରିବେ।

ତିନି ଭଉଣୀଯାକ ହୋ ହୋ ହୋଇ ହସି ଉଠିଲେ।

ସୁନନ୍ଦା ସେଠି ଆଉ ଠିଆ ନ ହୋଇ ପାରି ଫେରି ଆସି ସୀମା ବସିଥିବା ରୁମ୍ ଦୁଆର ମୁହଁରେ ଅଟକିଲେ। କବାଟ ଫାଙ୍କରୁ ଦେଖିଲେ ସୀମା ଦର୍ପଣ ଆଗରେ ଠିଆ ହୋଇ ମୁହଁରେ ଶେଷ ସ୍ପର୍ଶ ଦେଉଛି। ତଳେ ତାର ଶାଢ଼ି ଟକ ଏଣେ ତେଣେ ବିପର୍ଯ୍ୟସ୍ତ ହୋଇ ପଡ଼ିଛି। ସୀମା ହୁଏତ ଅପେକ୍ଷା କରିଛି ସୁନନ୍ଦା ତାଙ୍କ ସାନ ଝିଅମାନଙ୍କୁ ବୁଝାଇ ଗୋଟେ ଭଲ ଶାଢ଼ି ବଦଳାଇ ଆଣିଲେ ସିଏ ପିନ୍ଧିକି ବାହାରିବ।

ସୀମା ମୁହଁରେ ସ୍ପର୍ଶ ଦେଉ ଦେଉ କାନ୍ଥ ଘଣ୍ଟାକୁ ଚାହୁଁଚି। କିନ୍ତୁ ସୁନନ୍ଦା ନାଚାର। ସୀପା, ସୂଚୀ ଆଉ ସୁତପା କାହାକୁ କହିବେ ପିନ୍ଧିଥିବା ଶାଢ଼ି ଖୋଲି ପକା ତୋ ବଡ ଭଉଣୀ ପିନ୍ଧିବ?

ଦାଣ୍ଡ ଘରୁ ଶେଷାଂଶୁ ପାଟି କରୁଛି—କ'ଣ ଏତେ ଡେରି ହେଉଚି? ମାଆ! ଶୀଘ୍ର ସୀମା ଅପାକୁ ପଠା।

ସୁନନ୍ଦା କ'ଣ କରିବେ କିଛି ସ୍ଥିର କରି ନ ପାରି ତିନି ବଖରାଠୁ ସମାନ ଦୂରତାରେ ଥିବା ଡାଇନିଙ୍ଗ ସ୍ପେସ୍‌ରେ ଅସହାୟ ଭାବେ ଠିଆ ହୋଇ ରହିଲେ ଯେଉଁଠାରୁ ତିନି ବଖରାର ଶବ୍ଦ ସମାନ ଭାବରେ ଆସି ତାଙ୍କ କାନରେ ପିଟି ହେଉଥିଲା।



# ଶୋଷାଇଛା

ବାପା! ବାପା! କିଏ ସବୁ ଆସିଛନ୍ତି ଦେଖ। ଆଖି ଖୋଲ ବାପା! ରଣଜିତ୍ ବାପାଙ୍କୁ ଡ଼ାକୁଥିଲେ।

ଗାଢ଼ିକ ନିତ୍ୟାନନ୍ଦବାବୁଙ୍କ ଆଖି ଦୁଇଟା ନିସ୍ତେଜ ପାଦ ବଢ଼ାଇ ତାଙ୍କ ବିଛଣା ଚାରିପାଖରେ ଥରେ ପ୍ରଦକ୍ଷିଣ କରି କ୍ଳାନ୍ତ ହୋଇ ମୁଦି ହୋଇଗଲା। ତାଙ୍କ ରୋଗ ଶଯ୍ୟାର ଚାରିପାଖରେ ତାଙ୍କ ସୌରଜଗତର ଗ୍ରହ, ଉପଗ୍ରହ। ବଡ଼ ପୁଅ ସଂବିତ୍ ସ୍ୱିଜରଲ୍ୟାଣ୍ଡରୁ ଫେରିଛି। ତା ସହିତ ବୋହୂ ବର୍ଷା, ନାତି ଫର୍ଡ଼ିନାଣ୍ଡ, ନାତୁଣୀ ମର୍ସୀ। ସାନପୁଅ ରଣଜିତ, ବୋହୂ ସୋନାଲି, ନାତି ଆକାଶ, ନାତୁଣୀ ମଧୁମିତା ଏମାନେ ସମସ୍ତେ ଭୁବନେଶ୍ୱରରେ ନିତ୍ୟାନନ୍ଦଙ୍କ ପାଖରେ ରହନ୍ତି।

ଝିଅ ମୋନାଲିସା, ଜ୍ୱାଇଁ ଅଭିଜିତ୍, ନାତି ଟିଟୋନି ନିତ୍ୟାନନ୍ଦଙ୍କ ଅସୁସ୍ଥତା ଖବର ପାଇ ଦିଲ୍ଲୀରୁ ଆସିଛନ୍ତି।

ପୁଅ, ବୋହୂ, ଝିଅ, ଜ୍ୱାଇଁ, ନାତି, ନାତୁଣୀ ନିତ୍ୟାନନ୍ଦଙ୍କ ରୋଗଶଯ୍ୟାକୁ କୁଣ୍ଡଳୀକରି ଘେରିଛନ୍ତି।

ରଣଜିତ୍ ଆଉ ଥରେ ଉଦ୍ୟମ କଲେ—ବାପା! ବାପା! ଆଖି ଖୋଲ ବାପା! ଦେଖ, ଚିହ୍ନିପାରୁଚ ନା ନାହିଁ? ବାପା! ଆଖି ଖୋଲ ବାପା!

ନିତ୍ୟାନନ୍ଦଙ୍କ ଆଖି ଖୋଲା ହେବାକୁ ସମସ୍ତେ ଅପେକ୍ଷା କରି ଠିଆ ହୋଇଛନ୍ତି। ନିତ୍ୟାନନ୍ଦବାବୁ ସବୁ ଜାଣି ପାରୁଥିଲେ, ସମସ୍ତଙ୍କୁ ଚିହ୍ନି ପାରୁଥିଲେ; କିନ୍ତୁ ଆଖି ପତା ଟେକିବାକୁ ସମର୍ଥ ହୋଇ ପାରୁ ନଥିଲେ। ଦୁଇଟା ପାହାଡ଼ର ଓଜନ ଆଖିର ଦୁଇପତା ଉପରେ। ଆଖିପତା ଦୁଇଟି କେବଳ ଥର ଥର ହୋଇ ଥରୁଥିଲା। ଆଖି ଖୋଲିବା ପାଇଁ ନିତ୍ୟାନନ୍ଦବାବୁ ଯେଉଁ ଝୁଙ୍କାର ଦେଉଥିଲେ ସେଥିରେ ତାଙ୍କ ଆଖିର ପତା ଦୁଇଟା ଥରୁଥିଲା, ଦୋହଲୁଥିଲା କିନ୍ତୁ ଫିଟୁ ନଥିଲା।

ନାତୁଣୀ ମର୍ସୀ କାନ ପାଖରେ କୁନି ଟେପ୍‌ଟିଏ ଚାପିଧରି ହେଭିମେଟାଲ ସଙ୍ଗୀତର

ଆନନ୍ଦ ଚନ୍ଦ୍ର ପଣ୍ଡି

ଗୁଣୁ ଗୁଞ୍ଜନରେ ମଜି ଯାଉଥିଲା । ଅନ୍ୟ ନାତି ନାତୁଣୀମାନେ ନିଜ ନିଜ ମଧ୍ୟରେ କିଛିଟା ଚାପା ଆଳାପ ଆଲୋଚନା କରି ପରସ୍ପରଙ୍କୁ ପରିଚିତ କରାଇ ନେଉଥିଲେ । ଚେଜେଙ୍କ ଅସୁସ୍ଥତା ତାଙ୍କ ମନରେ କିଛି ପ୍ରଭାବ ପକାଇ ପାରୁ ନାହିଁ । ବରଂ ଏକାଠି ହୋଇ ଆଳାପ ଆଲୋଚନା କରିଆରେ ପରସ୍ପରକୁ ଜଣାଇବା, ଜାଣିବାର ଏକ ଅପୂର୍ବ ସୁନ୍ଦର ସୁଯୋଗ ସୃଷ୍ଟି କରିଛି । ସେମାନଙ୍କ ମୁହଁରେ ପାଖୁଡ଼ା ପାଖୁଡ଼ା ହସଫୁଲ ମୃଦୁ ପବନ ହିଲ୍ଲୋଳରେ ନାଚି ଯାଉଥିଲା ।

ଥର ଥର ହେଉଥିବା ନିତ୍ୟାନନ୍ଦଙ୍କ ଆଖିପତା ହଠାତ୍ ଖୋଲିଗଲା । ତାଙ୍କ ଚାରିପାଖେ ଘେରି ଥିବା ସମ୍ପର୍କବୃତ୍ତଟି ତାଙ୍କ ଆଖିକୁ କେନ୍ଦ୍ର କରି ଧୀରେ ଧୀରେ ପାଖକୁ ପାଖକୁ ଘୁଞ୍ଚି ଆସିଲା ।

ସାମ୍ନାରେ ଥିବା ଷ୍ଟିଲ୍ ଆଲମିରାକୁ ଚାହିଁଥିଲେ ନିତ୍ୟାନନ୍ଦବାବୁ । ସେ କିଛି କହି ପାରୁ ନଥିଲେ, କିନ୍ତୁ ଅନେକ କଥା ପ୍ରକାଶ କରିବା ପାଇଁ ତାଙ୍କ ଓଠ ଦୁଇଫାଳ ଥର ଥର ହୋଇ ଥରୁଥିଲା । ପୁଅ, ବୋହୂ, ଝିଅ, ଜ୍ୱାଇଁ, ନାତି, ନାତୁଣୀ ସମସ୍ତେ ତାଙ୍କ ଆଖି ଆଗରେ ଠିଆ ହୋଇ ନିତ୍ୟାନନ୍ଦବାବୁଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ସମସ୍ତ ଉଦ୍ୟମ କରି ବ୍ୟର୍ଥ ହେଲେ ।

ବଡ଼ବୋହୂ ବର୍ଷା ନିତ୍ୟାନନ୍ଦବାବୁଙ୍କ ଆଖି ଆଗରେ ତାଙ୍କ ପୁଅ ଫଡ଼ିନାଣ୍ଡକୁ ଠିଆ କରାଇ କହୁଥିଲେ—ଦେଖନ୍ତୁ ବାପା ! ଇଏ ଆପଣଙ୍କ ନାତି ଫଡ଼ିନାଣ୍ଡ । ଖୁବ୍ ଭଲ ପଢ଼େ, ଭଲ କ୍ରିକେଟ୍ ଖେଳେ । ଆପଣ ପରା ତାକୁ ଦେଖିବାକୁ ଚିଠି ଲେଖିଥିଲେ ? ଏଠିକି ଟିକେ ଚାହାଁନ୍ତୁ ବାପା ! ଇଏ ଆପଣଙ୍କ ନାତୁଣୀ ମର୍ସୀ । ଖୁବ୍ ଭଲ ଲନ୍‌ଟେନିସ୍ ଖେଳେ । ଏବର୍ଷ ସିଏ ଇଣ୍ଡିଆ ତରଫରୁ ରିପ୍ରେଜେଣ୍ଟ କରିବ ।

ଝିଅ ମୋନାଲିସା ତା ପୁଅ ଟିଟୋନିକୁ ନିତ୍ୟାନନ୍ଦଙ୍କ ପାଖକୁ ନେଇ ତାଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ କହିଲା—ଦେଖ ବାପା ! ଇଏ ତମ ନାତି ଟିଟୋନି । ଭଲ ବ୍ରେକ ଡ୍ୟାନ୍ସ କରେ । ଖୁବ୍ ଭଲ ପପ୍ ଗାଏ ।

ନା, କାହାରି ଡାକ ନିତ୍ୟାନନ୍ଦଙ୍କ ଦୃଷ୍ଟିକୁ ଆଲମିରା ଉପରୁ ଅନ୍ୟତ୍ର ଫେରାଇବାକୁ କ୍ଷମ ହେଲା ନାହିଁ । ଆଲମିରା ଉପରେ ତାଙ୍କ ଦୃଷ୍ଟି ନିବଦ୍ଧ ।

ସାନପୁଅ ରଣଜିତ୍ କହିଲେ— ବାପା ସାରା ଜୀବନ ଖିଆଲି । ଘରେ କାହାରିକୁ ନ କହି ଭୁବନେଶ୍ୱର ଛାଡ଼ି ଘୋର ଜଙ୍ଗଲକୁ ଚାଲିଯାଆନ୍ତି । ଅନେକ ଥର ବହୁ ଖୋଜାଖୋଜି ପରେ ମୁଁ ବାପାଙ୍କୁ କେବେ ପାଇଛି କପିଳାସ ଜଙ୍ଗଲରେ ତ ଆଉ କେବେ ଦଶପଲ୍ଲା ଜଙ୍ଗଲରେ । ଜହ୍ନ ରାତି ଖୋଜି ଖୋଜି ବାପା ଅନେକ ଥର ରାତି ବାରଟାବେଳେ ଖଣ୍ଡଗିରି ଯାଇଛନ୍ତି । ଅନେକ ସମୟରେ ନିଜ ଭିତରୁ ନିଜେ ଅନୁପସ୍ଥିତ ରୁହନ୍ତି । ସେଇଠି ବସିଥିବେ ଡାକି ଡାକି କଣ୍ଠ ଫାଟିଗଲେ ବି ସିଏ ଜବାବ ଦିଅନ୍ତି ନାହିଁ । ଲେଖକ ଆଉ ଦାର୍ଶନିକ ଏମିତି ଖିଆଲି, ଅସ୍ୱାଭାବିକ,

ଅସାଧାରଣ, ଅନନ୍ୟ। ସେମିତି କ'ଣ ଗୋଟେ ଭାବନାରେ ବାପା ବୁଡ଼ି ରହିଛନ୍ତି। ନିଜେ ନିଜ ଭିତରକୁ ନ ଫେରିବା ପର୍ଯ୍ୟନ୍ତ ସିଏ କାହାରି ଡାକ ଶୁଣିବେ ନାହିଁ।

ବଡ଼ ପୁଅ ସମିତ୍ ପ୍ରସ୍ତାବ ଦେଲା—ବାପାଙ୍କ ଦୃଷ୍ଟି ଆଲମିରା ଉପରେ ସ୍ଥିର ଅଛି। ତେଣୁ ମୁଁ ଆଶା କରୁଛି ଆଲମିରା ଭିତରେ କିଛି ମୂଲ୍ୟବାନ ପଦାର୍ଥ ଅଛି। ଆଲମିରାଟା ଖୋଲ ରଣଜିତ୍।

ରଣଜିତ୍ ଷ୍ଟିଲ ଆଲମିରା ଖୋଲିଲା। ନିତ୍ୟାନନ୍ଦଙ୍କ ଆଖି ଅଧିକରୁ ଅଧିକ ବିସ୍ତାରିତ ହେଲା। ଆଲମିରାର ଉପର ଥାକରେ ଗୋଟିଏ କାଗଜ ପ୍ୟାକେଟ୍। ଜଉମୁଦ ଦିଆଯାଇଛି। ନିତ୍ୟାନନ୍ଦଙ୍କୁ ଛାଡ଼ି ସମସ୍ତେ ସେଇ କାଗଜ ପ୍ୟାକେଟ୍‌କୁ ଘେରିଗଲେ। ପ୍ୟାକେଟ୍ ଉପରେ ବଡ଼ ବଡ଼ ଅକ୍ଷରରେ ଲେଖାଯାଇଛି—"ମୋ ମୃତ୍ୟୁ ପୂର୍ବରୁ ଖୋଲନ୍ତୁ ନାହିଁ।" ତା' ତଳକୁ ନିତ୍ୟାନନ୍ଦବାବୁ ସ୍ୱାକ୍ଷର କରିଛନ୍ତି।

ପ୍ୟାକେଟର ଆକାର ବାରଇଞ୍ଚ.... ଆଠ ଇଞ୍ଚ। ଓଜନ ପ୍ରାୟ ଦୁଇଶହ ଗ୍ରାମ।

ବିସ୍ମୟ, କୌତୂହଳ ଓ ଆଶଙ୍କା ନିତ୍ୟାନନ୍ଦଙ୍କ ପରିବାର ଓ ସଂପର୍କୀୟ ସମସ୍ତଙ୍କ ପାଦରୁ ମୁଣ୍ଡ ଆଡକୁ ଚଢ଼ି ଚଢ଼ି ଯାଉଥିଲା।

ହଠାତ୍ ବର୍ଷା ଚିତ୍କାର କଲେ — ବାପା ! ଆଖି ଖୋଲ ବାପା !

ସମସ୍ତଙ୍କ ଦୃଷ୍ଟି ପୁଣି ଫେରି ଆସିଲା ନିତ୍ୟାନନ୍ଦଙ୍କ ଉପରକୁ। ନିତ୍ୟାନନ୍ଦଙ୍କ ଆଖି ପୁଣି ବନ୍ଦ ହୋଇଯାଇଛି। ମୁଣ୍ଡଟା ତକିଆରେ ଆଉ ସିଧା ହୋଇ ରହୁନାହିଁ। ନିତ୍ୟାନନ୍ଦଙ୍କ ମୁଣ୍ଡକୁ ଦୁଇ ହାତରେ ଧରିଲେ ବର୍ଷା। ସାନବୋହୂ ସୋନାଲି ନିତ୍ୟାନନ୍ଦଙ୍କ ପାଦ ଦୁଇଟାକୁ ଆଉଁସୁ ଥିଲେ। ଝିଅ ମୋନାଲିସା ବାପାଙ୍କ ଛାତିରେ ହାତ ବୁଲାଉଥିଲେ।

ରଣଜିତ୍ ସଙ୍ଗେ ସଙ୍ଗେ ଡାକ୍ତର ଡାକି ଆଣିଲେ। ଡାକ୍ତର ନିତ୍ୟାନନ୍ଦଙ୍କୁ ପରୀକ୍ଷା କରି କହିଲେ—ରୋଗୀ ବର୍ତ୍ତମାନ କୋମା ଷ୍ଟେଜରେ ଅଛି। ସାଲାଇନଟାଏ ଦେଇ ଯାଉଛି। ଆପଣମାନେ ବ୍ୟସ୍ତ ହୁଅନ୍ତୁ ନାହିଁ। ସେନ୍ସ ଆସିବାକୁ ହୁଏତ ବିଳମ୍ବ ହୋଇପାରେ।

ଏମିତି କୋମା ଷ୍ଟେଜରେ ମାସ ମାସ ଧରି ରୋଗୀମାନେ ପଡ଼ି ରହିବାର ଦୃଷ୍ଟାନ୍ତ ଅଛି। ତେଣୁ ନିତ୍ୟାନନ୍ଦବାବୁଙ୍କର କୋମା କେବେ ଭାଙ୍ଗିବ ଓ ସେ କେବେ ଚେତା ଫେରି ପାଇବେ ତାର କୌଣସି ସ୍ଥିରତା ନାହିଁ।

ସମସ୍ତେ ଗୋଟିଏ ଦିନ, ଗୋଟିଏ ରାତି ନିତ୍ୟାନନ୍ଦଙ୍କ ବେଡ୍ ପାଖରେ ଜଗି ବସିବା ପରେ ଧୀରେ ଧୀରେ ସେମାନଙ୍କ ଧୈର୍ଯ୍ୟବନ୍ଧରେ ଘାଇ ସୃଷ୍ଟି ହେଲା। ସୁବିଧା ଦେଖି ଜଣ ଜଣ ହୋଇ ଉଠିଗଲେ। ତୃତୀୟ ଦିନକୁ ନିତ୍ୟାନନ୍ଦଙ୍କ ବେଡ୍ ପାଖରେ କେବଳ ଚାକରକୁ ରଖାଇ ଦେଇ ସମସ୍ତେ ନିଜକୁ ସହଜ ଓ ନିର୍ମଳ କରିନେଲେ।

ଆନନ୍ଦ ଚନ୍ଦ୍ର ପତି

କିନ୍ତୁ ସେଇ କାଗଜ ପ୍ୟାକେଟ୍‌ଟି ଯାହାକୁ ଜଉମୁଦ ଦେଇ ବନ୍ଦ କରିଥିଲେ ନିତ୍ୟାନନ୍ଦ ତାହା ସମସ୍ତଙ୍କ ମନକୁ ଆନ୍ଦୋଳିତ କରୁଥିଲା; ସମସ୍ତଙ୍କ ମନରେ ଅନେକ ଅନେକ କଳ୍ପନାର ଶିଢ଼ି ଖଞ୍ଜି ଚାଲିଥିଲା। ରଣଜିତ୍ କାଗଜ ପ୍ୟାକେଟ୍‌ଟି ନିଜ ଶୋଇବା ଘରେ ରଖିଥିଲେ ବି ସମସ୍ତେ ତା' ଉପରେ ସତର୍କ ଦୃଷ୍ଟି ରଖିଛନ୍ତି। ସମସ୍ତଙ୍କ ଦୃଷ୍ଟି ବର୍ତ୍ତମାନ ନିତ୍ୟାନନ୍ଦଙ୍କ ଉପରୁ ହଟି ଆସି ସେଇ କାଗଜ ପ୍ୟାକେଟ୍ ଉପରେ ଠୁଳ ହୋଇଯାଇଛି।

ସମସ୍ତଙ୍କ ମନରେ ଗୋଟିଏ ପ୍ରଶ୍ନ– ଏ ପ୍ୟାକେଟ୍ ଭିତରେ କ'ଣ ଅଛି? କାହିଁକି ତାକୁ ସିଲ୍ କରାଯାଇଛି ଓ ମୃତ୍ୟୁ ପୂର୍ବରୁ ନ ଖୋଲିବାକୁ ଲେଖାଯାଇଛି? ରଣଜିତ, ସମିତ, ବର୍ଷା, ସୋନାଲୀ ଓ ମୋନାଲିସା ବିଭିନ୍ନ କଥା ଭାବି ଚାଲିଛନ୍ତି। ପ୍ୟାକେଟ୍ ଭିତରେ କ'ଣ ଥାଇପାରେ ବୋଲି ଅନ୍ଦାଜ ଲଗାଇ ଚାଲିଛନ୍ତି।

ପ୍ୟାକେଟ୍ ଭିତରେ ହୁଏତ ଭୁବନେଶ୍ୱର ପ୍ଲଟ, ଗାଁ ଘର ଓ ଗାଁ ଜମିବାଡ଼ିର କାଗଜପତ୍ର ଥାଇପାରେ।

ପ୍ୟାକେଟ୍ ଭିତରେ ଗୋଟିଏ ଉଇଲ ଥାଇପାରେ। ବାପା ହୁଏତ ତାଙ୍କ ସମସ୍ତ ସମ୍ପତ୍ତିର ଉତ୍ତରାଧିକାରୀ ସମ୍ପର୍କରେ ଗୋଟିଏ ଉଇଲ୍ କରିଯାଇଛନ୍ତି।

ମାଆଙ୍କ ଦେହାନ୍ତବେଳେ ମାଆ କିଛି କହିବାକୁ ଚାହୁଁଥିଲେ କିନ୍ତୁ କିଛି କହିବା ଆଗରୁ ଶେଷ ନିଃଶ୍ୱାସ ତ୍ୟାଗକଲେ। ମାଆଙ୍କ ଗହଣାପତ୍ର ହୁଏତ ଏଇ ପ୍ୟାକେଟ ଭିତରେ ବନ୍ଦ କରି ବାପା ରଖିଛନ୍ତି।

ହୁଏତ ବାପାଙ୍କର କିଛି ଗୋପନୀୟ ପ୍ରଣୟ କାହାଣୀ ଅଛି ଯାହା ସିଏ ଜୀବିତାବସ୍ଥାରେ ପ୍ରକାଶ କରିପାରିବେ ନାହିଁ ଏବଂ ତାହା ପ୍ରକାଶିତ ନ ହେଲେ ତାଙ୍କ ଆତ୍ମା ସେପାରିରେ ଶାନ୍ତି ପାଇପାରିବ ନାହିଁ।

ହୁଏତ ସେ ପ୍ୟାକେଟ୍‌ରେ ପ୍ରଣୟିନୀର ସମସ୍ତ ପ୍ରେମପତ୍ର ସାଇତା ହୋଇ ରହିଛି। ବାପା ସେ ସବୁକୁ ଗୋଟିଏ ପ୍ରେମ ଚିଠି ସଂକଳନ କରିବା ଉଦ୍ଦେଶ୍ୟରେ କୌଣସି ପ୍ରକାଶକଙ୍କ ପାଇଁ ଛାଡ଼ି ଯାଇଛନ୍ତି।

ଏ ସବୁଠୁ ଅତ୍ୟନ୍ତ ନୂଆ କଥାଟିଏ ଆଶଙ୍କା କରି ରଣଜିତ୍ ଭୟ ପାଇ ଯାଇଥିଲେ। ରଣଜିତ୍ ଭାବୁଥିଲେ ହୁଏତ ବାପାଙ୍କର ରଣଜିତ୍, ସମିତ ଓ ମୋନାଲିସାକୁ ଛାଡ଼ି ଆଉ କିଛି ସନ୍ତାନ ଅନ୍ୟ କୌଣସି ମାତା ଗର୍ଭରୁ ଜନ୍ମିଛନ୍ତି ଏବଂ ଅନ୍ୟ କେଉଁଠି ବଢ଼ିଛନ୍ତି। ତେଣୁ ସେଇ ସନ୍ତାନ ସମ୍ପର୍କରେ କିଛି ଗୋପନୀୟ ତଥ୍ୟ, କିଛି ସ୍ୱୀକାରୋକ୍ତି ଓ ସେଇ ସନ୍ତାନ ପାଇଁ କିଛି ଗୋଟେ ଉଇଲ୍ ଏ ପ୍ୟାକେଟ୍ ଭିତରେ ଅଛି। ବାପାଙ୍କ ସମ୍ପତ୍ତିରୁ ଅନ୍ୟ କାହାକୁ ଭାଗ ଦେବା କଥା ରଣଜିତ୍ ଗ୍ରହଣ କରିବା ଅସମ୍ଭବ।

ହାତୁଡ଼ି ପରି ରଣଜିତ୍ ଛାତି ଭିତରେ କ'ଣ ଗୋଟେ ପିଟିଚାଲିଛି। ଭୁବନେଶ୍ୱର

ପ୍ଲଟ କି ଘରରୁ ସିଏ କାହାକୁ ଭାଗଦେଇ ପାରିବ ନାହିଁ। ଗାଁ ଜମିବାଡ଼ି ଓ ଘରଦ୍ୱାର ବଡ଼ଭାଇ ସଂବିତ ନେଇ ପାରନ୍ତି। ମୋନାଲିସା ନାଆଁରେ ଗୋଟେ ପ୍ଲଟ ବାପା କିଣିଛନ୍ତି। ତା ବାହାରେ ତାକୁ କିଛି ଦେବା ପରି ମାନସିକତା ରଣଜିତର ନାହିଁ।

ଲେଖକ, ଚିତ୍ରକର, ସଂଗୀତଜ୍ଞ କିମ୍ବା ଅଭିନେତା ଏମାନେ ସମସ୍ତେ ଖିଆଲି। ସବୁଠୁ ବେଶି ଖିଆଲି ଲେଖକ। ଲେଖକମାନଙ୍କର ଅନେକଠି ଅନେକ ଆଫେୟାର୍ ଥାଏ। ବାପାଙ୍କର ସେମିତି କିଛି ଆଫେୟାର୍ ନ ଥିବ ବୋଲି କିଏ କହିବ ?

ଏମିତି କଳ୍ପନା ଜଳ୍ପନା, ଆଶା ଆଶଙ୍କାର ତହତହ ତାତି ସମସ୍ତଙ୍କ ଦେହରେ ତହକୁ ଥିଲା। ରଣଜିତ୍, ସଂବିତ୍, ବର୍ଷା ସୋନାଲି, ଓ ମୋନାଲିସା ନିଜ ନିଜ ବାଟରେ ଭାବୁଥିଲେ। ପ୍ୟାକେଟ୍‌ଟି ଅଧିକରୁ ଅଧିକ ସନ୍ଦେହ ଘେର ଭିତରକୁ ପଶି ପଶି ଯାଉଥିଲା।

କୋମାରେ ରହିବାର ଅଷ୍ଟମ ଦିନରେ ନିତ୍ୟାନନ୍ଦବାବୁଙ୍କର ମୃତ୍ୟୁ ହେଲା। ରଣଜିତ୍ ଓ ସଂବିତ୍ ପ୍ୟାକେଟ୍ ଖୋଲିଲେ। ପରିବାରର ସମସ୍ତଙ୍କ ଆଖି ସେଇ କାଗଜ ପ୍ୟାକେଟ ଉପରେ ଠୁଳ ହୋଇଥିଲା। ପ୍ୟାକେଟ୍ ଭିତରୁ ବାହାରିଲା ନିତ୍ୟାନନ୍ଦବାବୁଙ୍କ ହାତଲେଖା କିଛି କାଗଜ ଓ ଗୋଟିଏ ବ୍ଲୁ ପ୍ରିଣ୍ଟ। ହାତଲେଖା ଗୁଡ଼ିକ ବାପାଙ୍କ ଅପ୍ରକାଶିତ ପାଣ୍ଡୁଲିପି ନୁହଁ ବୋଲି ପ୍ରଥମେ ଘୋଷଣା କଲେ ରଣଜିତ୍। ପ୍ରଥମ କାଗଜଟି ଦୁଇ ପୁଅ, ଦୁଇବୋହୂ ଓ ଝିଅ ଜ୍ୱାଇଁଙ୍କ ଉଦ୍ଦେଶ୍ୟରେ ନିତ୍ୟାନନ୍ଦବାବୁଙ୍କ ସ୍ୱହସ୍ତ ଲିଖିତ ଇଚ୍ଛାପତ୍ର।

ଖୁବ୍ ଆବେଗର ସହିତ ପଢ଼ିଲେ ରଣଜିତ୍।

ମୋର ମୃତ୍ୟୁ ପରେ ମୋ ଶବକୁ ଆମ ଡ୍ରଇଂ ରୁମ୍‌ରେ ଅତି କମରେ ଗୋଟିଏ ଦିନ ରଖିବ। ଆବଶ୍ୟକ ହେଲେ ବରଫ ଉପରେ ରଖିପାର। ଏହି ସମୟ ମଧ୍ୟରେ ମୋର ସାହିତ୍ୟିକ ବନ୍ଧୁମାନେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାର ସୁଯୋଗ ପାଇବେ। ମୋ ଶବ ଉପରେ ବିଭିନ୍ନ ସାହିତ୍ୟିକ ବନ୍ଧୁମାନେ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଥିବା ଅବସରରେ ମୋ ଫଟୋ ଉଠାଇବ। ଆମ ରାଜ୍ୟର ସମସ୍ତ ଇଂରାଜୀ, ଓଡ଼ିଆ ଦୈନିକ ସଂବାଦପତ୍ରକୁ ମୋ ମୃତ୍ୟୁର ସଂବାଦ ନିଜେ ଲେଖିକି ଦେବ। ଟେଲିଭିଜନ ଓ ରେଡ଼ିଓକୁ ସଂବାଦଟି ମୋ ମୃତ୍ୟୁର ଘଣ୍ଟାଏ, ଦୁଇଘଣ୍ଟା ମଧ୍ୟରେ ପଠାଇବ ଯେପରି ସେଇଦିନ ସଂଧ୍ୟା ନିଉଜ୍‌ରେ କିମ୍ବା ତା'ପରଦିନ ସକାଳ ନିଉଜ୍‌ରେ ତାହା ପ୍ରଚାରିତ ହେବ। ଟି.ଭି. ସଂବାଦ ସହିତ ମୋର ଗୋଟିଏ ଫଟୋ ଦେବ। ଏସବୁ ସଂବାଦ କିପରି ଲେଖାଯିବ, ତା'ର ନମୁନା ମୁଁ ଏଥିସହିତ ସଂଲଗ୍ନ କରିଦେଇଛି। ତାକୁ କେବଳ ଉତାରିକି ପଠାଇଦେବ। ଶୂନ୍ୟ ଥିବା ସ୍ଥାନରେ ମୋ ମୃତ୍ୟୁର ତାରିଖ ଓ ସମୟ ଲେଖିବାକୁ ବାକି ଅଛି। ତାହା ପୂରଣ କରିଦେବ।

ଆନନ୍ଦ ଚନ୍ଦ୍ର ପହି

ଏ ପ୍ୟାକେଟରେ ଥିବା ବ୍ଲୁପ୍ରିଣ୍ଟଟି ମୋ ସମାଧି ପୀଠ ଓ ଷ୍ଟାଚ୍ୟୁର ନକ୍ସା -। ଆମ ଭୁବନେଶ୍ୱର ଘର ସାମ୍ନାରେ ମୋ ସମାଧିଟି ତିଆରି କରିବ। ସେଥିରେ ମାର୍ବଲ ପଥରରେ ମୋର ଫୁଲ୍ ସାଇଜର ଷ୍ଟାଚ୍ୟୁଟିଏ ତିଆରି କରିବ। ଏସବୁର ସବିଶେଷ ନକ୍ସା ଓ ଅର୍ଥ ଅଟକଳ କରାଯାଇଛି। ଏସବୁ କରିବା ପାଇଁ ପ୍ରାୟ ତିରିଶ ହଜାର ଟଙ୍କା ଲାଗିବ। ମୁଁ ଏଥିପାଇଁ ପନ୍ଦର ହଜାର ଟଙ୍କା ଛଅବର୍ଷ ହେଲା ଫିକ୍ସଡ ଡିପୋଜିଟ୍ ସ୍କିମ୍‌ରେ ରଖିଛି। ତାର କାଗଜପତ୍ର ମଧ ଏହି ପ୍ୟାକେଟରେ ଅଛି।

ମୋର ଗୋଟିଏ ତୈଳଚିତ୍ର ପ୍ରସ୍ତୁତ ପାଇଁ ଟଙ୍କା ଓ ଫଟୋ ରାଜଧାନୀର ବିଶିଷ୍ଟ ଚିତ୍ରକର ରାଧାବିନୋଦ ରାଉତଙ୍କୁ ମୁଁ ବର୍ଷେ ତଳେ ଦେଇଛି। ସେ ମୋର ତୈଳଚିତ୍ରଟି ଆଙ୍କି ସାରି ମୋତେ ଦେଖାଇଛନ୍ତି। ମୋର ଏକାଦଶାହ ଦିନ ଫଟୋଟି ଚିତ୍ରକରଙ୍କ ଘରୁ ନେଇ ଆସିବ। ଆମ ଡ୍ରଇଂ ରୁମ୍‌ରେ ମୋର ସେ ତୈଳଚିତ୍ରଟି ସମସ୍ତଙ୍କ ଦୃଷ୍ଟି ପଡ଼ିବା ପରି ସ୍ଥାନରେ ଟାଙ୍ଗିବ।

ମୋ ମୃତ୍ୟୁର ପ୍ରଥମ ବାର୍ଷିକୀ ଉପଲକ୍ଷେ ଗୋଟିଏ ସ୍ମରଣିକା ପ୍ରକାଶ କରିବ। ମୋର ଯେଉଁମାନଙ୍କ ସହିତ ଭଲ ସଂପର୍କ, ଯେଉଁ ଲେଖକ, ସମାଲୋଚକ ବନ୍ଧୁମାନେ ମୋର ଅତି ଅନ୍ତରଙ୍ଗ ସେଇମାନଙ୍କଠାରୁ ମୋ ସଂପର୍କରେ ଲେଖା ଆଣିବ। ତୁମେ ସେମାନଙ୍କୁ ସବୁ ଚିହ୍ନିନା। ସେମାନଙ୍କର ଗୋଟିଏ ତାଲିକା (ସେମାନଙ୍କ ଠିକଣା ସହିତ) ଏହି ପ୍ୟାକେଟ୍ ମଧରେ ଅଛି। ସ୍ମରଣିକା ପାଇଁ ଲେଖା ମାଗିବା ପାଇଁ କିପରି ଅନୁରୋଧ କରାଯିବ, ତା'ର ଗୋଟିଏ ଡ୍ରାଫ୍ଟ ମୁଁ କରି ଦେଇଛି। ସ୍ମରଣିକାର ସଂପାଦକୀୟ କିପରି ଲେଖାଯିବ ଓ ମୋ ଜୀବନୀ କିପରି ଲେଖାଯିବ, ତା'ର ଦୁଇଟି ଡ୍ରାଫ୍ଟ ମଧ ଏହି ପ୍ୟାକେଟ୍‌ରେ ରଖାଯାଇଛି।

ମୋର ଗୋଟିଏ ଗଳ୍ପ ପୁସ୍ତକର ପାଣ୍ଡୁଲିପି କଟକର ସାଗର ପ୍ରକାଶନୀ ପାଖରେ ଅଛି। ତାହା ଯେପରି ମୋ ମୃତ୍ୟୁ ବାର୍ଷିକୀ ଦିନ ପ୍ରକାଶ ପାଏ, ସେଥିପ୍ରତି ଦୃଷ୍ଟି ଦେବ।

ତୁମେ ସବୁ ହୁଏତ ସ୍ୱତଃପ୍ରବୃତ୍ତ ଭାବେ ଏ କାମ କରି ଥାଆନ୍ତ। କିନ୍ତୁ ତୁମେ ମୋ ପାଇଁ କ'ଣ କଲ ମୁଁ ତାହା ଦେଖିବାକୁ ନ ଥିବି। ତେଣୁ ମୁଁ ଯାହା ଇଚ୍ଛା ପ୍ରକାଶ କରିଯାଉଛି, ସେସବୁର ଏକ ବ୍ଲୁ ପ୍ରିଣ୍ଟ ମୁଁ ମୋ ମୃତ୍ୟୁ ପୂର୍ବରୁ ଦେଖିଯାଇଛି ବୋଲି ଧାରଣା ନେଇ ମୁଁ ଯାଉଛି।

ଚିଠିଟି ପଢ଼ିସାରି ରଣଜିତ୍ ସମସ୍ତଙ୍କ ମୁହଁକୁ ଚାହିଁଲେ। ପ୍ୟାକେଟ୍‌ଟି ଖୋଲିବା ପୂର୍ବରୁ ଯେତିକି ବିସ୍ମୟ ଭାବ ସମସ୍ତଙ୍କ ମୁହଁରେ ଥିଲା, ଇଚ୍ଛାପତ୍ରଟି ଶୁଣି ସାରିବା ପରେ ସମସ୍ତଙ୍କ ମନ ଭିତରର ବିସ୍ମୟ ଭାବ ତା'ଠୁଁ ଅଧିକ ବିସ୍ତାରିତ ହେଉଥିଲା।





ଗାଳ୍ପିକ : ଆନନ୍ଦ ଚନ୍ଦ୍ର ପହି

ଜନ୍ମ : ତା ୧୧.୪.୧୯୪୬

ଜନ୍ମସ୍ଥାନ : ନିହଲ ପ୍ରସାଦ, ଢେଙ୍କାନାଳ।

ଶ୍ରୀ ପହିଙ୍କ ଦ୍ୱାରା ରଚିତ
କ୍ଷୁଦ୍ରଗଳ୍ପ ପୁସ୍ତକ :

- ଧୂଳିଝଡ଼
- ମୁହଁ ସଂଜ
- ଅନେକ ମୁହଁ
- ଅନ୍ୟ ଅରଣ୍ୟ
- ଝାପ୍ସା
- ଚରିତ୍ରର ଚିତ୍କାର

ଶ୍ରୀପହି ତାଙ୍କ ବଳିଷ୍ଠ ଗଳ୍ପ ଗୁଡ଼ିକ ମଧ୍ୟରୁ କେତେକ ଗଳ୍ପକୁ ନାଟ୍ୟରୂପ ପ୍ରଦାନ କରିଛନ୍ତି। ସେ ନାଟକ ଗୁଡ଼ିକ ବେତାର ଓ ଦୂରଦର୍ଶନରୁ ପ୍ରସାରିତ ଓ ମଞ୍ଚରେ ସଫଳତାର ସହ ପ୍ରଦର୍ଶିତ ହୋଇ ଦର୍ଶକମାନଙ୍କ ଦ୍ୱାରା ଭଳ ପ୍ରଶଂସିତ।

ଆନନ୍ଦ ଚନ୍ଦ୍ର ପହିଙ୍କ ଦ୍ୱାରା ରଚିତ ନାଟକ :

- ରେଖାଚିତ୍ର
- ପ୍ରତୀକ୍ଷାରେ ପରୀକ୍ଷିତ
- ଅନ୍ୟ ଅରଣ୍ୟ
- ଯନ୍ତା
- ଆଲୋକର ଅନ୍ଧକାର
- ଅନେକ ମୁହଁ
- ହଜି ଯାଇଥିବା ମଣିଷ
- କାଲି ଆଜି କାଲି
- ଆଗାମୀ ସୂର୍ଯ୍ୟୋଦୟ
- ମୁହଁ ସଂଜ
- ଚିଠି
- ଅମୁହାଁ ଦେଉଳ
- ଆଜୁଆଳ ଫଟଫନ
- ଅଧିକାର
- କୁଣ୍ଢାଁ ମେଲା
- ଅଚିହ୍ନା ଅପରାଧ
- ଭାଙ୍ଗିପଡୁଥିବା ଭୂମି
- ନୀଳ କର୍ଣ୍ଣ
- ପାଗଳୀ ସୁଅ
- ଅନ୍ୟ ଏକ ସିଦ୍ଧାର୍ଥ
- ଖାନ୍‌ତଭାସ
- ଆକ୍ସିଡେଣ୍ଟ
- ବୁଢୀଆଣୀ ଜାଲ
- ଝିଅ ଦେଖା
- ଆକାଶର ରଙ୍ଗ
- ଦେବଦ୍ରୁମ ଦୁଇଟି ଫୁଲ
- ଦୂରଦିଗନ୍ତ
- ଶୋଷ
- ସ୍ୱାସ୍ଥ୍ୟନିବାସ
- ଭୟ
- ସୂର୍ଯ୍ୟ ପରାଗ
- ଦୂର ଦିଗନ୍ତ